ବାଲ୍ମୀକି ନାୟକଙ୍କ

# ହେତୁବାଦର ଆବଶ୍ୟକତା



ଏଥିରେ ପାଇବେ :

ଯମପୁର ଏକ ପ୍ରହେଳିକା

ମିଥ୍ୟା ପୂଜା କାହିଁକି ?

ମୁହୂର୍ତ୍ତ ଗଣନାର ଚକ୍ରବ୍ୟୂହ

# ହେତୁବାଦର ଆବଶ୍ୟକତା NEED OF ATHEISM

(ହେତୁବାଦ ଆଧାରିତ ପୁସ୍ତକ) (Based on atheism)


ଲେଖକ:

**ବାଲ୍ମୀକି ନାୟକ**

ଘର ନଂ :୧୦୧,

ଡିଏସ-ମେକ୍ସ ସିଗୁଲନେଷ୍ଟ

ବାସବାନପୁର

ପୋ : ଭିରୁଗୋନଗର

ବେଙ୍ଗାଲୁରୁ - ୫୬୦୦୪୯

ମୋ : ୦୯୪୮୨୦୧୬୨୬୦



ପ୍ରକାଶିକା :

**ଶ୍ରୀମତୀ ମମତା ନାୟକ**

ବେଙ୍ଗାଲୁରୁ - ୫୬୦୦୪୯

ପ୍ରଚ୍ଛଦଶିଳ୍ପୀ :

ମୁକେଶ କୁମାର ସ୍ୱାଇଁ

ମୁଦ୍ରଣ :

**ରଶ୍ମି ପ୍ରିଣ୍ଟର୍ସ**

ଏଫ୍. ଏମ୍.-୯୬ ଓ ୧୩୨

ନୂଆ ବସ୍‌ଷ୍ଟାଣ୍ଡ, ରାଉରକେଲା-୧

ମୋ : ୯୪୩୮୪୬୬୯୦୭





ଦ୍ୱିତୀୟ ପ୍ରକାଶନ : - ୨୦୧୭

ମୂଲ୍ୟ : ୮୦/-



*Author :*

**Balmiki Nayak**

Flat No. 101

DS-Max Seagullanest

Basavanapura

Bengaluru - 560049

Mob. : 09482016260

E-mail - balmikinayak@gmail.com



*Publisher :*

**Smt. Mamata Nayak**

Bengaluru - 560049

*Cover Desine :*

*Mukesh Kumar Swain*

*Printer :*

**Rashmi Printers**

FM - 96 & 132, New Bus Stanc

Rourkela - 769001

Mob. : 9438466907





*Second Edition : - 2017*

**Price : 80/-**

# ଉତ୍ସର୍ଗ

ଯେଉଁମାନେ ପୁରୁଣା କୁସଂସ୍କାର ଓ ରକ୍ଷଣଶୀଳ ବନ୍ଧନରୁ ନିଜକୁ ମୁକ୍ତ କରିବାକୁ ଚାହୁଁଛନ୍ତି, ସେହି ଓଡ଼ିଆ ପାଠକ ଓ ପାଠିକାମାନଙ୍କୁ ହେତୁବାଦ ରୂପକ ଏକ ଚାବିକାଠି ଆବଶ୍ୟକ । ମୋର ଏହି କ୍ଷୁଦ୍ର ପୁସ୍ତକଟି ସେହି ଆବଶ୍ୟକତାକୁ କେତେକାଂଶରେ ପୂରଣ କରିପାରିବ ବୋଲି ଆଶା କରି ଜିଜ୍ଞାସୁ ମଣିଷମାନଙ୍କ ହାତରେ ଅର୍ପଣ କରୁଛି ।

**ଲେଖକ**

# ପ୍ରାକ୍‌କଥନ

ହେତୁବାଦର ଆବଶ୍ୟକତା କାହିଁକି ? ଏହି ପ୍ରଶ୍ନର ଉତ୍ତର ଜାଣିବାପାଇଁ ଆମେ ପ୍ରଥମେ ଜାଣିବା ଉଚିତ-ହେତୁବାଦ କ'ଣ ? ହେତୁବାଦକୁ ନିରୀଶ୍ୱରବାଦ ବି କୁହାଯାଏ। ହେତୁର ଅର୍ଥ କାରଣ। କାରଣ ନ ଜାଣି କୌଣସି ବସ୍ତୁର ଅସ୍ତିତ୍ୱକୁ ସ୍ୱୀକାର କରାଯାଉଛି। ଯାହାଫଳରେ ଦୁନିଆରେ ଯେତେ ମଣିଷ, ଯେତେ ପ୍ରକାର ଈଶ୍ୱର ବା ଭଗବାନ ବିଶ୍ୱାସ ପ୍ରଚଳିତ ହୋଇଛି। ମଜା କଥା ହେଉଛି ଯେ ସମସ୍ତେ ଦାବି କରୁଛନ୍ତି - "ମୋ ଭଗବାନ ହିଁ ସତ୍ୟ ଓ ସର୍ବଶକ୍ତିମାନ।" ଏହି ଦ୍ୱନ୍ଦ୍ୱକୁ ଚ୍ୟାଲେଂଜ କରି ଦୁନିଆର ଅନେକ ବୁଦ୍ଧିଜୀବୀ ନିଜ ଅନୁଭବ ଓ ପରୀକ୍ଷଣ ଆଧାରରେ କହୁଛନ୍ତି - କାହାରି ଭଗବାନ ସତ୍ୟ ନୁହେଁ। ସର୍ବଶକ୍ତିମାନ ହେବାତ ଦ୍ୱିତୀୟ କଥା। ଭଗବାନ ସତରେ ଅଛନ୍ତି କି ନାହିଁ ବିବାଦୀୟ ବିଷୟ ହୋଇପାରେ କିନ୍ତୁ ଭଗବାନ ଓ ଧର୍ମ ନାମରେ ସମାଜ, ସଂପ୍ରଦାୟ ଓ ଦେଶ ଦେଶ ଭିତରେ ଯେଉଁ ଅମାନବୀୟ ଘଟଣା ଘଟୁଛି, ତାହାକୁ କେହି ଅସ୍ୱୀକାର କରୁନାହାନ୍ତି। ପ୍ରତ୍ୟେକ ଦେଶରେ ଧାର୍ମିକ ଉନ୍ମାଦ ଯୋଗୁଁ ଅସଂଖ୍ୟ ନିରୀହ ଲୋକ ପ୍ରାଣ ହରାଉଛନ୍ତି। ଅନେକ ଧନ ଓ ସଂପଦ ନଷ୍ଟ ହେଉଛି। ପରିଣାମତଃ ପ୍ରତ୍ୟେକ ମଣିଷ ଆଜି ବି ଅଶାନ୍ତି ଓ ଅସୁରକ୍ଷିତ ମନେ କରୁଛି। କୌଣସି ଭଗବାନ ରକ୍ଷା କରିପାରୁନାହାନ୍ତି।

ହେତୁବାଦ ପ୍ରଥମେ ମାନବବାଦକୁ ବିଶ୍ୱାସ କରେ। ମଣିଷ ଚରିତ୍ରରେ ଦୟା, କ୍ଷମା, ତ୍ୟାଗ ଓ ସେବା ଭଳି ମାନବୀୟ ଗୁଣ ଗୁଡିକ ବିକଶିତ କରିବାପାଇଁ, ତା'ମନରୁ କୁସଂସ୍କାର, ଭିତ୍ତିହୀନ ବିଶ୍ୱାସ ଓ ରୂଢିବାଦୀ ପରମ୍ପରାକୁ ତ୍ୟାଗ କରିବା ଆବଶ୍ୟକ। "ଜଗତମିଥ୍ୟା-ବ୍ରହ୍ମସତ୍ୟ" ଭଳି ଆପ୍ତ ବଚନକୁ ମୁକ୍ତ ମନରେ ହେତୁବାଦୀ ବିଚାରଧାରାରେ ବିଶ୍ଳେଷଣ କଲେ ଏହାର ଓଲଟା ଅର୍ଥ ବୁଝାପଡେ। ଅର୍ଥାତ ଆମ ଚାରିପାଖରେ ବିଦ୍ୟମାନ ଥିବା ଜଗତସତ୍ୟ ଓ ଅଦେଖା, ଅଶୁଣା ବ୍ରହ୍ମ ମିଥ୍ୟା। ଜଗତକୁ ଜାଣିବା, ବୁଝିବା ଓ ଅନୁଭବ କରିବା ଦ୍ୱାରା ଜୀବନଧାରଣ ସହଜ ହୋଇପଡୁଛି କିନ୍ତୁ ତଥାକଥିତ ବ୍ରହ୍ମକୁ ଜାଣିବା, ବୁଝିବା ଓ ଅନୁଭବ କରିବାପାଇଁ ମଣିଷର ସାରା ଜୀବନ ଦୁଃଖ ଓ କଷ୍ଟରେ ବିତିଯାଉଛି। ହେତୁବାଦର ଆବଶ୍ୟକତାକୁ ଜାଣିବାପାଇଁ ଏତିକି କ'ଣ ଯଥେଷ୍ଟ ନୁହେଁ ?

***ବାଲ୍ମୀକି ନାୟକଙ୍କ ହେତୁବାଦୀ ରଚନା ପଢ଼ି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିକଶିତ କରନ୍ତୁ । ନିଜର ଆତ୍ମ ବିଶ୍ୱାସ ବୃଦ୍ଧି କରନ୍ତୁ ।***

## ଚମତ୍କାର ରହସ୍ୟ

ଦ୍ୱିତୀୟ ସଂସ୍କରଣ (୨୦ ଗୋଟି ପ୍ରବଂଧ) ମୂଲ୍ୟ : ୯୦/- ଟଙ୍କା

***ଏଥିରେ ପାଇବେ :-*** ଗରିବ ଦେଶର ଧନୀ ଭଗବାନ, ହାଇଟେକ ପୂଜା ପଦ୍ଧତି ଓ ଧନୀ ଭକ୍ତ, ଧାର୍ମିକ ମେଳା ଓ ପର୍ବ ବେଳେ ବିପଦ

## ତର୍କର ଉର୍ଦ୍ଧ୍ୱରେ କିଏ ?

ଦ୍ୱିତୀୟ ସଂସ୍କରଣ (୧୪ ଗୋଟି ପ୍ରବଂଧ) ମୂଲ୍ୟ : ୭୦/- ଟଙ୍କା

***ଏଥିରେ ପାଇବେ :-*** ଆତ୍ମାର ବୈଜ୍ଞାନିକ ବିଶ୍ଳେଷଣ, ପିଣ୍ଡଦାନ କାହା ପାଇଁ, ଧର୍ମ ସହିତ ବିଜ୍ଞାନର ସଂଘର୍ଷ

## ହେତୁବାଦର ଆବଶ୍ୟକତା

(୨୦ ଗୋଟି ପ୍ରବଂଧ) ମୂଲ୍ୟ : ୮୦/- ଟଙ୍କା

***ଏଥିରେ ପାଇବେ :-*** ଯମପୁର ଏକ ପ୍ରହେଳିକା, ମିଥ୍ୟାପୂଜା କାହିଁକି ?, ମୁହୂର୍ତ୍ତ ଗଣନାର ଚକ୍ରବ୍ୟୂହ

## ଅଦ୍ଭୁତ ଜନବିଶ୍ୱାସ

(୨୦ ଗୋଟି ପ୍ରବଂଧ) ମୂଲ୍ୟ : ୯୦/- ଟଙ୍କା

***ଏଥିରେ ପାଇବେ :-*** ବିଜ୍ଞାନ ଦୃଷ୍ଟିରେ ପୁନର୍ଜନ୍ମ, ବାବାଙ୍କ ମାୟାଜାଲରେ ମହିଳା ଭକ୍ତ, ଭଗବାନଙ୍କ ସୁରକ୍ଷାର ପ୍ରଶ୍ନ

## ହେତୁବାଦୀ ରହସ୍ୟ

(୨୧ ଗୋଟି ପ୍ରବଂଧ) ମୂଲ୍ୟ : ୮୦/- ଟଙ୍କା

***ଏଥିରେ ପାଇବେ :-*** ସତୀଙ୍କ ନାମରେ ଶକ୍ତିପୀଠ ମାନଙ୍କ ରହସ୍ୟ, ବାବାମାର୍କା ନକଲି ଧନ୍ଦା, ବିଭୂତିର ମାୟା, ବିଭୂତିର ମାୟା

***ରିହାତି ମୂଲ୍ୟରେ ପୁସ୍ତକ ପାଇବା ପାଇଁ ସିଧା ଲେଖକଙ୍କ ସହିତ ଯୋଗାଯୋଗ କରନ୍ତୁ ।***

***ମୋ : ୦୯୪୮୨୦୧୭୨୭୦***

# ସୂଚୀପତ୍ର


| କ୍ରଃନଂ. | ବିଷୟ | ପୃଷ୍ଠା |
|---|---|---|
| ୧) | ଯଥାସ୍ଥିତି ବାଦର ସମର୍ଥକ | ୭ |
| ୨) | ଧର୍ମ ଦେଉଛି ଭିକ୍ଷାବୃତ୍ତିର ଲାଇସେନ୍ସ | ୧୪ |
| ୩) | ଯମପୁରର କାହାଣୀ : ଏକ ପ୍ରହେଳିକା | ୨୦ |
| ୪) | ଅହେତୁବାଦୀ ବିଶ୍ୱାସ | ୩୨ |
| ୫) | ଧାର୍ମିକ ଶ୍ରଦ୍ଧା ବନାମ ଲୌକିକ ବିଶ୍ୱାସ | ୩୯ |
| ୬) | ମିଥ୍ୟା ପୂଜା କାହିଁକି ? | ୪୨ |
| ୭) | ଆସ୍ତିକବାଦର ଅହେତୁବାଦୀ ପକ୍ଷ | ୪୫ |
| ୮) | ଧର୍ମର ପରିଭାଷା | ୪୯ |
| ୯) | ନୈତିକତାର ପ୍ରେରଣା କେଉଁଠୁ ମିଳେ ? | ୫୫ |
| ୧୦) | ହେତୁବାଦର ଆବଶ୍ୟକତା | ୬୨ |
| ୧୧) | ଆମର ଧର୍ମ ପ୍ରବଣ ମାନସିକତା | ୬୫ |
| ୧୨) | ଭଗବାନ କେ ଘର ଦେର ହୈ .... | ୬୯ |
| ୧୩) | ପ୍ରଚଳିତ ପ୍ରବଚନ ବନାମ ହେତୁବାଦୀ ବଚନ | ୭୩ |
| ୧୪) | ଧର୍ମ-ନିରପେକ୍ଷନୀତି ଧର୍ମକୁ ଆଖିଠାର | ୭୮ |
| ୧୫) | ରୁଗଣ ମାନସିକତା ଓ ତନ୍ତ୍ର-ମନ୍ତ୍ର | ୮୨ |
| ୧୬) | ଆମେ କେଉଁ ମାର୍ଗରେ ଯିବା ? | ୮୬ |
| ୧୭) | ଜାତକ ମିଳନ ଏକ ଭିତ୍ତିହୀନ ବିଶ୍ୱାସ | ୯୧ |
| ୧୮) | ମୁହୂର୍ତ୍ତ ଗଣନାର ଚକ୍ରବ୍ୟୂହ | ୯୬ |
| ୧୯) | ଧର୍ମ-ନିରପେକ୍ଷତା : ଏକ ପର୍ଯ୍ୟାଲୋଚନା | ୧୦୨ |
| ୨୦) | ଆମର ଥିଲା କହିବା ଏକ ଅସ୍ଖଳନ | ୧୦୮୬ |


*******

# ଯଥାସ୍ଥିତିବାଦର ସମର୍ଥକ

ମଣିଷ ସମାଜରେ ପୂର୍ବରୁ ଚଳିଆସିଥିବା ସମସ୍ତ ପ୍ରକାର ଧାର୍ମିକ କର୍ମକାଣ୍ଡ, ପରମ୍ପରା ଓ ସାମାଜିକ ଚଳଣୀକୁ ଆଧୁନିକ ଯୁଗରେ ବି ସେହି ରୀତି ଓ ନୀତିକୁ ଚଳେଇବାପାଇଁ ଜିଦ୍ କରୁଥିବା ଲୋକମାନଙ୍କୁ ଆମେ "ଯଥାସ୍ଥିତିବାଦ"ର ସମର୍ଥକ ବୋଲି କହିପାରିବା। ପ୍ରକୃତରେ ଯଥାସ୍ଥିତିର ଅର୍ଥ ହେଉଛି "ଜଡତା"। ଏହାକୁ ସମର୍ଥନ କରୁଥିବା ଲୋକମାନେ ଆଧୁନିକତାକୁ ବିରୋଧ କରିବାର କାରଣ ହେଉଛି - ଆଧୁନିକଚିନ୍ତନ ଓ ସାମାଜିକ ଚଳଣୀରେ ମାନବୀୟ ଅଧିକାର, ସାମାଜିକ ସ୍ତରରେ ଆର୍ଥିକ ସମାନତା ଓ ସମାନ ନ୍ୟାୟର ବ୍ୟବସ୍ଥା ରହିବା ଦ୍ୱାରା ସେମାନଙ୍କ ହିତ ସାଧନରେ ବାଧା ସୃଷ୍ଟି କରୁଛି। କାରଣ ଅତି ସ୍ପଷ୍ଟ। ପ୍ରତ୍ୟେକ ବ୍ୟକ୍ତିକୁ ଯଦି ଆର୍ଥିକ ସୁରକ୍ଷା, ସାମାଜିକ ନ୍ୟାୟ, କର୍ମ କରିବାପାଇଁ ସ୍ୱତନ୍ତ୍ରତା ଏବଂ ବିକାଶ କରିବାପାଇଁ ଆବଶ୍ୟକ ସୁବିଧା ମିଳି ପାରିବ ତେବେ ଉଚ୍ଚ ବା ସମୃଦ୍ଧ ବର୍ଗର ଲୋକମାନଙ୍କ ଘରେ ଓ ବାହାରେ କାମ କରିବାପାଇଁ ନୀଚ ଓ ଗରିବ ଶ୍ରେଣୀର ଲୋକ କେଉଁଠୁ ମିଳିବ ? ବଡଲୋକ ମାନଙ୍କୁ ନୌକର, ନୌକରାଣୀ, ଡ୍ରାଇଭର, ବନ୍ଧୁଆ ଶ୍ରମିକ, ବାଳ ଶ୍ରମିକ ଆଦି ସହଜରେ ମିଳିବ ନାହିଁ। ସେମାନଙ୍କ ମତରେ ଉଚ୍ଚ ବର୍ଗ ଆଧୁନିକ ଭୌତିକ ସୁଖ ଉପଭୋଗ କରି ପାରିବେ କିନ୍ତୁ ନିମ୍ନ ସ୍ତରରେ ଜନ୍ମ ଗ୍ରହଣ କରିଥିବା ମଣିଷମାନେ ପୂର୍ବରୁ ମାନ୍ୟତା ପ୍ରାପ୍ତ ସାମାଜିକ ପଦ୍ଧତିରେ ପରିବର୍ତ୍ତନ କରିପାରିବେ ନାହିଁ।

ପରବର୍ତ୍ତୀ କାଳରେ ମାନବତାବାଦୀ ବୈଜ୍ଞାନିକ ଚିନ୍ତାଧାରା ଯୋଗୁଁ ସୃଷ୍ଟି ହୋଇଥିବା ସମତାମୂଳକ ଚେତନା ସାଧାରଣ ଜନତାଙ୍କ ଉପରେ ଉଲ୍ଲେଖନୀୟ ପ୍ରଭାବ ପକାଇଲା। ଏହା ଫଳରେ ୧୭୭୫ ମସିହାରେ ଆମେରିକାରେ ସ୍ୱାଧୀନତା ସଂଗ୍ରାମ, ୧୭୮୯ ମସିହାରେ ଫ୍ରାନସରେ ରାଜ୍ୟକ୍ରାନ୍ତି ଏବଂ ଋଷିଆରେ ୧୯୧୭ମସିହାରେ ସମାଜବାଦୀ କ୍ରାନ୍ତିର ସୂତ୍ରପାତ ହୋଇଥିଲା। ସମାଜବାଦୀ ବ୍ୟବସ୍ଥା ଯୋଗୁଁ ବ୍ୟକ୍ତିକୁ ଯେଉଁ ସାମାଜିକ ଓ ଆର୍ଥିକ ସୁରକ୍ଷା ମିଳିପାରିଲା ତାହା ପୁଞ୍ଜିବାଦୀ ବ୍ୟବସ୍ଥାକୁ ଗଭୀର କ୍ଷତି ପହଁଞ୍ଚାଇଲା। ୧୯୩୫ ମସିହାରେ ଆମେରିକା

ଏବଂ ୧୯୪୪ମସିହାରେ ବ୍ରିଟେନ୍ ପ୍ରଥମ ଥରପାଇଁ ସାମାଜିକ ସୁରକ୍ଷାକୁ ପୁଞ୍ଜିବାଦୀ ବ୍ୟବସ୍ଥା ସହିତ ଯୋଗ କରି ଇତିହାସ ପୃଷ୍ଠାରେ ସୁନାମ ଅର୍ଜନ କରିଛନ୍ତି । ଏହା ପୂର୍ବରୁ ୟୁରୋପରେ ନବଜାଗରଣ ଆନ୍ଦୋଳନ ସହିତ ବୈଜ୍ଞାନିକ ଅନୁସନ୍ଧାନ, ବିଶ୍ଳେଷଣ, ଆବିଷ୍କାର, ଉଦଭାବନ ଏବଂ ପ୍ରୟୋଗ ଆଦି ୟୁରୋପରେ ପ୍ରକୃତିବାଦୀ ଏବଂ ଧର୍ମନିରପେକ୍ଷ ବିଚାରଧାରାକୁ ପୂର୍ବରୁ ପ୍ରଚଳିତ ଋଢିବାଦୀ ପରମ୍ପରା ଭିତରେ ପରିବର୍ତ୍ତନର ବୀଜାରୋପଣ କରି ସାରିଥିଲା ।

ସମତାମୂଳକ ମାନବୀୟ ଦୃଷ୍ଟିକୋଣ ଏବଂ ଚିନ୍ତନ ଗୁଡିକର ମୂଳରେ କେବଳ ନୀରିଶ୍ୱରବାଦୀ, ନାସ୍ତିକ ଓ ଉଦାରବାଦୀ ଦାର୍ଶନିକମାନଙ୍କର ହିଁ ଅବଦାନ ରହିଥିଲା । ଈଶ୍ୱରବାଦୀ ଓ ଆସ୍ତିକମାନେ ମାନବବାଦ ଓ ନୈତିକତା ସମ୍ପର୍କରେ ବହୁତ ବଢେଇ ଚଢେଇ ଭାଷଣ ତ ଦିଅନ୍ତି କିନ୍ତୁ ସାମାଜିକ ବିଷମତା ଓ ନିମ୍ନ ଜାତି ଲୋକମାନଙ୍କ ପ୍ରତି ଅନ୍ୟାୟ ପ୍ରତି ସେମାନେ ଉଦାସୀନ ରହନ୍ତି । ଇତିହାସରୁ ଜ୍ଞାତ ହୁଏ ଯେ ସମାଜରେ ସମତାମୂଳକ ମାନବାଧିକାର ସ୍ଥାପନପାଇଁ ଆସ୍ତିକମାନଙ୍କ ଯୋଗଦାନ ନଗଣ୍ୟ କିନ୍ତୁ ନାସ୍ତିକମାନଙ୍କ ଭୂମିକା ମହତ୍ତ୍ୱପୂର୍ଣ୍ଣ ରହିଛି । ନାସ୍ତିକମାନେ ବୌଦ୍ଧିକ, ବିବେକ, ସଂସ୍କୃତ ଓ ଯଥାର୍ଥ ଜ୍ଞାନପୂରକ ଚିନ୍ତନ ଦ୍ୱାରା ସମତାମୂଳକ ନୈତିକ ମାନବୀୟ ମୂଲ୍ୟର ସ୍ଥାପନ କରି ତାହାର ବିକାଶପାଇଁ ନିଜ ଜୀବନକୁ ସମର୍ପିତ କରି ଦେଇଛନ୍ତି ।

ଏହି ସମ୍ପର୍କରେ ନାସ୍ତିକମାନଙ୍କପାଇଁ ଆସ୍ତିକ ସମାଜରେ ପ୍ରଚଳିତ କିଛି ଋଢିବାଦୀ ଧାରଣାର ଉଲ୍ଲେଖ କରିବା ଆବଶ୍ୟକ ରହିଛି । ଭାରତ ଏବଂ ଇସ୍‌ଲାମିକ୍ ଦେଶମାନଙ୍କରେ ହେତୁବାଦୀଙ୍କ ପ୍ରତି ଏକ ଘୃଣ୍ୟ ମନୋଭାବ ରହିଛି । ସେମାନଙ୍କ ମତରେ ହେତୁବାଦୀମାନେ ସ୍ୱେଚ୍ଛାଚାରୀ, ବ୍ୟଭିଚାରୀ, ମର୍ଯ୍ୟାଦାହୀନ, ନିର୍ଦ୍ଦୟ, ଚରିତ୍ରହୀନ, ଉଚ୍ଛୃଙ୍ଖଳ ପ୍ରବୃତ୍ତି ଏବଂ ଅନୈତିକ କର୍ମ କରୁଥିବା ବ୍ୟକ୍ତିଗଣ ବୋଲି ଏକ ଭିତ୍ତିହୀନ ଧାରଣା ରହିଛି । ଏହି ଧାରଣାକୁ ଧାର୍ମିକ ଓ ପୌରାଣିକ ଗ୍ରନ୍ଥ ମାନଙ୍କରେ ବିଭିନ୍ନ ଲୋକକଥା ଓ କାହାଣୀ ମାଧ୍ୟମରେ ପ୍ରଚାର ଓ ପ୍ରସାର କରାଯାଇଛି । ଯାହାର ଅର୍ଥ ହେଉଛି ଏହାକୁ ପଢି ଶୁଣି କୌଣସି ଆସ୍ତିକ ବ୍ୟକ୍ତି ନାସ୍ତିକ ବା ହେତୁବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ନ ହେଉ ଏବଂ ଆଜୀବନ ଧର୍ମର ସଂକୀର୍ଣ୍ଣ ଗଳିରେ ହିଁ ଭୂଆଁ ବୁଲୁଥାଉ ।

ଗତ ଅନେକ ବର୍ଷରୁ କିଛି ନିର୍ଭୀକ ତଥା ହେତୁବାଦୀ ବ୍ୟକ୍ତିଙ୍କ ଯୋଗୁଁ ଅନେକ ତଥାକଥିତ ଭଣ୍ଡ ଧର୍ମଗୁରୁଙ୍କ ଅସଲ ରୂପ ସମାଜ ଆଗରେ ପରଦାଫାଶ ହୋଇପାରିଛି । ଯେଉଁମାନେ ସମାଜକୁ ଦେଖେଇବାପାଇଁ ପୂଜା-ପାଠ, ଭଜନ-କୀର୍ତ୍ତନ, ଧାର୍ମିକ-ହୋମ, ଯଜ୍ଞ ଆଦି ଆୟୋଜନ କରି ମିଠାମିଠା କଥାରେ ପ୍ରବଚନ ଦେଇ ଜନ ମାନସକୁ ସମ୍ମୋହିତ କରିଥା'ନ୍ତି କିନ୍ତୁ ସେମାନଙ୍କର ଅସଲ ଧନ୍ଦା ଥାଏ ମଦ୍ୟପାନ, ବିଭିନ୍ନ ନିଶା ଦ୍ରବ୍ୟର ଚାଲାଣ, ଯୁବତୀମାନଙ୍କର ଯୌନ ଶୋଷଣ ଭଳି ଅପକର୍ମ । ଅନେକ କ୍ଷେତ୍ରରେ ଧର୍ମଗୁରୁମାନଙ୍କର ପ୍ରଶାସନିକ ନେତା ଏବଂ ପୋଲିସ୍ ଅଧିକାରୀମାନଙ୍କ ସହିତ ସମ୍ପର୍କ ଭଲ ରହୁଥିବାରୁ ଅପରାଧ ଓ କୁକର୍ମର ଭଲ କରି ତଦନ୍ତ ହୋଇପାରୁନି । ଦୋଷୀକୁ ଦଣ୍ଡ ମିଳିବା ତ ଦୂରରକଥା ।

ହେତୁବାଦୀଙ୍କ ସମ୍ପର୍କରେ ପାରମ୍ପରିକ ଭାବେ ଯେଉଁ ଭ୍ରାନ୍ତ ଧାରଣା ସମାଜରେ ପ୍ରଚଳିତ ଅଛି, ତାହା ପ୍ରକୃତରେ ସତ୍ୟ ନୁହେଁ । ଜଣେ ହେତୁବାଦୀ ଭଲକରି ଜାଣିଥାଏ ଯେ କୁକର୍ମକୁ ଲୁଚାଇବାପାଇଁ ସେ ଧାର୍ମିକ ଖୋଳର ବ୍ୟବହାର କରିପାରିବ ନାହିଁ । ଦୋଷକଲେ ସମାଜ ଏବଂ କାନୁନ୍ ହାତରେ ସେ ନିଶ୍ଚୟ ଦଣ୍ଡ ପାଇବ । ସେଥିପାଇଁ ନୈତିକତା ରକ୍ଷା କରି ସମାଜରେ ଚଳିବା ହେତୁବାଦୀପାଇଁ ଅନିବାର୍ଯ୍ୟ ହୋଇପଡେ । ଆସ୍ତିକ ବ୍ୟକ୍ତି ଅନୈତିକ କାମ କଲେ ବି ପ୍ରଥମତଃ ତାଙ୍କୁ କେହି ସହଜରେ ସନ୍ଦେହ କରିବ ନାହିଁ । ଦ୍ୱିତୀୟତଃ ପାପ ଜନିତ ଅପରାଧ ବୋଧରୁ ମୁକ୍ତିପାଇବାପାଇଁ ଧାର୍ମିକ କର୍ମକାଣ୍ଡ ଉପଲବ୍ଧ ଅଛି । ପବିତ୍ର ନଦୀ କିମ୍ବା ପୁଷ୍କରିଣୀରେ ବୁଡ ପକେଇବା, ହୋମ ଓ ଯଜ୍ଞ କରିବା, ପଣ୍ଡା ପୂଜାରୀଙ୍କୁ ଦାନ ଦକ୍ଷିଣା ଦେଇ ପୂଜା ଅର୍ଚ୍ଚନା କରାଇଲେ ସମସ୍ତ ଦୋଷପାଇଁ କ୍ଷମା ମିଳିଯାଏ । ଅନ୍ୟ ଅର୍ଥରେ ନୂଆ ପାପ କରିବାପାଇଁ ଲାଇସେନ୍ସ ମିଳିଯାଏ ।

ଆମେ ଜାଣିଛୁ ଆଧ୍ୟାତ୍ମିକତା ସହିତ ଧର୍ମର ଗଭୀର ସଂବଧ ରହିଛି । କିନ୍ତୁ ଆଧ୍ୟାତ୍ମବାଦର ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ବି ଅଛି । ଈଶ୍ୱର ଓ ଧର୍ମକୁ ଅସ୍ୱୀକାର କରି ମଧ୍ୟ ମଣିଷ ଆଧ୍ୟାତ୍ମିକ ହୋଇପାରେ । ଆଧ୍ୟାତ୍ମିକତା "ଚିନ୍ତନ ଶକ୍ତି"ର ଏକ ମହାନ୍

ଉଚ୍ଚସ୍ଥାନକୁ ବୁଝାଏ, ଯେଉଁଠି ମଣିଷ ସମଦୃଷ୍ଟି ପ୍ରାପ୍ତ କରେ, ମନରୁ ଲୋଭ ଉଭେଇ ଯାଏ, କୁଣ୍ଠାକୁ ମନରୁ ତ୍ୟାଗ କରି ମାନବବାଦୀ ହୋଇଯାଏ। ତା'ର ପ୍ରତିବଦ୍ଧତା କେବଳ ଗୋଟିଏ ସମ୍ପ୍ରଦାୟ ବା ଜାତି ପ୍ରତି ନ ହୋଇ ସମଗ୍ର ମାନବଙ୍କପାଇଁ ହୋଇଥାଏ। ତା'ପାଇଁ ପର ଆପଣାର ଭେଦଭାବ ନଥାଏ। ଏହାହିଁ ହେଉଛି ଆସ୍ତିକ ଓ ନାସ୍ତିକମାନଙ୍କର ଆଧ୍ୟାତ୍ମିକତାକୁ ବୁଝିବାରେ ଭିନ୍ନ ଭିନ୍ନ ବିଚାର।

ଆସ୍ତିକ ବ୍ୟକ୍ତି, ସ୍ୱର୍ଗ, ମୋକ୍ଷ ଓ ପୁନର୍ଜନ୍ମର ଗୋଲକଧନ୍ଦାରେ ପଡି ପରମାତ୍ମାରେ ଲୀନ ହେବାର ସ୍ୱପ୍ନ ଦେଖୁଥାଏ। ସେଥିପାଇଁ ସେ ନିଜ ଚାରି ପାଖରେ ବାସ କରୁଥିବା ଚଳନ୍ତି ମଣିଷମାନଙ୍କ ଅପେକ୍ଷା କେବେ ବି ଦେଖି ନଥିବା, ଅନୁଭବ କରି ନଥିବା ତଥାକଥିତ ଅଦୃଶ୍ୟ ଈଶ୍ୱରଙ୍କ ଉପରେ ବିଶ୍ୱାସ କରିଥାଏ। ଏହି ମାନସିକତା ଯୋଗୁଁ ସେ ମନୁଷ୍ୟ ଏବଂ ସଂସାର ପ୍ରତି ବିରକ୍ତ ହୋଇ ନିରପେକ୍ଷ ଭାବ ଗ୍ରହଣକରି ନିଏ। ନିଜ ଚାରି ପାଖରେ ଯେତେ ଅନ୍ୟାୟ, ଅତ୍ୟାଚାର ଦେଖିଲେ ବି ସେ ନିର୍ବିକାର ଓ ନିରପେକ୍ଷ ଭାବେ ସ୍ୱୀକାର୍ କରିନିଏ। ତାଙ୍କ ମତରେ ଈଶ୍ୱର ସବୁ ଦେଖୁଛନ୍ତି, ସେ ହିଁ ସୁଧାରି ଦେବେ। ଅନ୍ୟାୟର ପ୍ରତିବାଦ କିମ୍ବା ବିରୋଧ କରିବାପାଇଁ ସାହସ ଜୁଟେଇ ପାରେନାହିଁ। ଏହି ଭଳି ଆଧ୍ୟାତ୍ମିକତାର ସମର୍ଥକମାନେ ଭୌତିକ, ସଂସାର ଏବଂ ଶରୀରକୁ ମିଛ ମାୟା ବୋଲି କହି ସଂଘର୍ଷରୁ ଓହରି ରହିବା ଦ୍ୱାରା ପଳାୟନବାଦୀ ଓ ଭୟାଳୁ ପ୍ରବୃତ୍ତିକୁ ଜନ୍ମ ଦେଇଥାଏ।

ଏହାର ବିପରୀତ ସ୍ଥିତିନାସ୍ତିକ ମାନଙ୍କଠାରେ ପରିଲକ୍ଷିତ ହୁଏ। ନାସ୍ତିକପାଇଁ ଏହି ଭୌତିକ ସଂସାର ବା ମାନବ ଶରୀର ମିଛ ନୁହେଁ କି ମାୟା ନୁହେଁ। ତା'ର ଆତ୍ମା ତଥାକଥିତ ଅଲୌକିକ ଶକ୍ତି ଅପେକ୍ଷା ମାନବ ଶକ୍ତି ଉପରେ କୈନ୍ଦ୍ରିକ ରହେ। ସଂସାରରେ ଦୁଃଖ ଓ ଅଶାନ୍ତି ସୃଷ୍ଟି କରୁଥିବା କାରଣ ଗୁଡିକୁ ଅନୁଶୀଳନ କରି ସମାଧାନର ଉପାୟଚିନ୍ତା କରେ। ଆସ୍ତିକମାନଙ୍କର ଅସହଯୋଗ ତଥା ବିରୋଧ ସତ୍ତ୍ୱେ ନାସ୍ତିକମାନେ ମାନବ ମଙ୍ଗଳ କାର୍ଯ୍ୟରେ ସାହସର ସହିତ ଆଗେଇ ଯାଆନ୍ତି।

ନାସ୍ତିକ ଆଧ୍ୟାତ୍ମିକ ଦାର୍ଶନିକମାନଙ୍କର ଅବଦାନ ମାନବ ସମାଜ ପାଇଁ କୌଣସି ଋଷି, ମୁନି, ସାଧୁ ଓ ସନ୍ୟାସୀଙ୍କ ଠାରୁ କମ୍ ନୁହେଁ। ସେମାନଙ୍କର

ବିଚାରଧାରା କୌଣସି ଧର୍ମସମ୍ପ୍ରଦାୟ ବା ଜାତି ବିଶେଷଙ୍କ ଭିତରେ ସୀମିତ ରହେ ନାହିଁ। ଦର୍ଶନ, ବିଜ୍ଞାନ, ଚିକିତ୍ସା, ରାଜନୀତି, ସାହିତ୍ୟ ଓ କଳା ଆଦି ସମସ୍ତ କ୍ଷେତ୍ରରେ ନିଜର ରଚନାଶୈଳୀ ଓ ଆବିଷ୍କାର ଯୋଗୁଁ ମାନବ ଜାତିର ଅଭୂତପୂର୍ବ ପ୍ରଗତି ହୋଇପାରିଛି।

ଆଜି ବି ଆମେ ଦେଖିବା ଯେଉଁ ଦେଶରେ ଧର୍ମର ପ୍ରଭାବ ରହିଛି କିମ୍ବା ଧର୍ମ ନାମରେ ଶାସନ ଚାଲିଛି, ସେଠିକା ଲୋକମାନେ ଆଧୁନିକ ପ୍ରଗତି କ୍ଷେତ୍ରରେ ବହୁତ ପଛରେ ରହିଛନ୍ତି।

ପ୍ରାରମ୍ଭିକ ଏବଂ ମଧ୍ୟକାଳୀନ ଅବସ୍ଥାରେ ବିକାଶ ନିର୍ଭର କରୁଥିଲା ପ୍ରକୃତି ଉପରେ କାରଣ ସେତେବେଳେ ମଣିଷ ଅନ୍ୟ କୌଣସି ଜ୍ଞାନ ପାଇ ନଥିଲା। ଧୀରେ ଧୀରେ ମଣିଷ ଯେତେବେଳେ ବୌଦ୍ଧିକ ସ୍ତରକୁ ବିକାଶଲାଭ କଲା, ସେତେବେଳେ ନିଜର ଅନୁଭବରୁ ବି ସେ ଅନେକ କଥା ଜାଣିପାରିଲା। ଯେଉଁମାନେ ବୁଝିପାରିଲେ ଯେ ମଣିଷର ଭାଗ୍ୟ ବା ଭବିଷ୍ୟତ ଇଶ୍ୱରଙ୍କ ଉପରେ ନିର୍ଭର କରୁନାହିଁ ବରଂ ମଣିଷ ହାତରେ ହିଁ ଅଛି, ସେହିମାନେ ହିଁ ମଣିଷର ଚିନ୍ତାଧାରା ଓ ଜୀବନଶୈଳୀରେ ପରିବର୍ତ୍ତନ ଆଣି ପାରିଲେ। ବୈଜ୍ଞାନିକ ବୁଦ୍ଧିବାଦୀ ଓ ଦାର୍ଶନିକମାନେ ଯଥାର୍ଥବାଦ ଚିନ୍ତନ ଦ୍ୱାରା ମଣିଷମନର ଅନେକ ରହସ୍ୟକୁ ସମାଧାନ କରିଦେଲେ। ବିକଶିତ ହୋଇଥିବା ପଶ୍ଚିମ ଦେଶ ଗୁଡିକ ଏହାର ଜ୍ୱଳନ୍ତ ଉଦାହରଣ। ଜାପାନକୁ ପ୍ରଥମ ଉଦାହରଣ ରୂପେ ଦେଖିପାରିବା। ସେଠାରେ ପ୍ରାକୃତିକ ସାଧନର ଘୋର ଅଭାବ ଥିବା ସତ୍ତ୍ୱେ ନିଜର ବୁଦ୍ଧି, ଶ୍ରମ ଏବଂ ଦେଶଭକ୍ତିର ଭାବନା ବଳରେ ଜାପାନ ଆଜି ପୃଥିବୀରେ ଏକ ଶ୍ରେଷ୍ଠସ୍ଥାନ ଅଧିକାର କରିପାରିଛି।

ଯଦି ମାନବର ବିକାଶପାଇଁ ଇଶ୍ୱର ଓ ଧର୍ମ ହିଁ ମୁଖ୍ୟକାରଣ ହୋଇଥା'ନ୍ତା ତେବେ "ଭାରତ" ଧର୍ମ ପ୍ରଧାନ ଇଶ୍ୱର ବିଶ୍ୱାସୀ ଲୋକମାନଙ୍କର ସଂଖ୍ୟା ବହୁତ ବେଶୀ ଥିବାରୁ ବିକାଶ ମାର୍ଗରେ ସବୁଠାରୁ ଆଗରେ ଠିଆ ହୋଇଥାନ୍ତା। ତଥାକଥିତ ଇଶ୍ୱରଙ୍କ ପ୍ରତି କମ୍ ଆସ୍ଥା ରଖୁଥିବା ଏବଂ ଭୋଜନ ସୁଖକୁ ବେଶୀ ଗୁରୁତ୍ୱ ଦେଉଥିବା

ପଶ୍ଚିମ ଦେଶ ଗୁଡିକ ବିକାଶ ମାର୍ଗରେ ଶେଷ ଧାଡିରେ ଦେଖିବାକୁ ମିଳୁଥାନ୍ତା। ଆଶ୍ଚର୍ଯ୍ୟର କଥା ଯେ ଯେଉଁ ଦେଶରେ ଏକ କିମ୍ବା ଦୁଇ ନୁହେଁ ପୂରା ତେତିଶ କୋଟି ଦେବୀଦେବତା ବାସ କରୁଛନ୍ତି, ସେହି ଦେଶ ସବୁଠାରୁ ପଛୁଆ ହୋଇରହିଛି। ସେହି ଦେଶରେ ସବୁଠାରୁ ବେଶୀ ଅଶିକ୍ଷା, ଗରିବି, କୁସଂସ୍କାର, ରୋଗ, ଅକାଳ ବାର୍ଦ୍ଧକ୍ୟ, ଅକାଳ ମୃତ୍ୟୁ ଇତ୍ୟାଦି ଅନେକ ପ୍ରକାର ଦୁଃଖ ଭରି ରହିଛି।

ଏହାର କାରଣ ସମ୍ପର୍କରେ ପ୍ରଶ୍ନକଲେ - ଆସ୍ତିକମାନେ କାଳ ବିଳମ୍ବ ନ କରି ଉତ୍ତର ଦିଅନ୍ତି - ଆଜିକାର ଧର୍ମକର୍ମ ସବୁ ବୁଡିଗଲାଣି, ଲୋକମାନେ ଆଧ୍ୟାତ୍ମିକ ମାର୍ଗକୁ ତ୍ୟାଗ କରିଦେଇଥିବାରୁ ଦୁଃଖ ଭୋଗ କରୁଛନ୍ତି।

ଆମ ମନରେ ପୁଣି ପ୍ରଶ୍ନ ଉଠୁଛି ଆଜି ବି ଭାରତର ଅଧିକାଂଶ ଲୋକ ଆସ୍ତିକ ଏବଂ ସେମାନଙ୍କ ଦ୍ୱାରା ସମସ୍ତ ପ୍ରକାର କର୍ମକାଣ୍ଡ ଚାଲିଛି। ସେମାନଙ୍କ ମଧ୍ୟରୁ କେତେକ ସଂସାର ମାର୍ଗ ତ୍ୟାଗ କରି ଆଧ୍ୟାତ୍ମମାର୍ଗରେ ଚାଲୁଥିବାର ଦାବି କରୁଛନ୍ତି। ଆମେ ସେହିଭଳି ଅନେକ ବ୍ୟକ୍ତିଙ୍କୁ ଜାଣିଛୁ। ସେମାନେ ଅନେକ ପ୍ରକାର ଶାରୀରିକ ଓ ମାନସିକ ସମସ୍ୟା ଭୋଗ କରୁଛନ୍ତି କାହିଁକି ? ଆସ୍ତିକ ବ୍ୟକ୍ତି ଗୁଡିକ ଯଦି ସୁଖ ଶାନ୍ତିରେ ଜୀବନ ଅତିବାହିତ କରୁଥା'ନ୍ତେ ତେବେ ଈଶ୍ୱର ଓ ଧର୍ମକୁ ନେଇ ନାନାପ୍ରକାର ତର୍କ ଓ ବିତର୍କ କାହିଁକି ହୁଅନ୍ତା ? ନାସ୍ତିକ ହେବାକୁ କିଏ ବା ଇଚ୍ଛା କରନ୍ତା ? ସୁଖ ଓ ଶାନ୍ତିରେ ରହିବାପାଇଁ ଆସ୍ତିକ ହେବାକୁ କିଏ କାହିଁକି ମନା କରନ୍ତା ?

ଦୁନିଆର ଯେଉଁ ଦେଶ ଗୁଡିକ ଉନ୍ନତି ପଥରେ ଆଗେଇ ଯାଇ ବିକାଶ ଲାଭ କରିଛନ୍ତି, ସେ ଦେଶର ଲୋକମାନେ ଧର୍ମାନ୍ଧତାରୁ ମୁକ୍ତ ଅଛନ୍ତି। ମଧ୍ୟଯୁଗୀୟ ଜଡ଼ତା ଅବସ୍ଥାରୁ ସେମାନଙ୍କୁ ମୁକ୍ତ କରିବା ପଛରେ କେବଳ ନାସ୍ତିକ ଗୋଷ୍ଠୀଙ୍କ ହାତ ରହିଛି। ଧର୍ମ ବି ରହିଛି କିନ୍ତୁ ଧର୍ମର ହସ୍ତକ୍ଷେପ ମାତ୍ର ଔପଚାରିକ ଭାବେ ବ୍ୟକ୍ତିଗତ ସ୍ତର ପର୍ଯ୍ୟନ୍ତ ସୀମିତ ରହୁଛି। ରାଜନୀତିରେ ଶାସନରେ ଧର୍ମର ଅନୁପ୍ରବେଶ ପ୍ରାୟ ନଥାଏ। ମଧ୍ୟଯୁଗରେ ଧର୍ମର ହସ୍ତକ୍ଷେପ ଯୋଗୁଁ ରୀତିନୀତି

କ୍ଷେତ୍ରରେ ଯେଉଁ କ୍ଷତି ହୋଇଥିଲା ସେହି ତିକ୍ତ ଅନୁଭବ ଯୋଗୁଁ ବିକଶିତ ଦେଶର ଲୋକମାନେ ଧର୍ମକୁ ବ୍ୟକ୍ତିଗତ ଆସ୍ଥା ପର୍ଯ୍ୟନ୍ତ ସୀମିତ ରଖୁଛନ୍ତି । ବୁଦ୍ଧିଜୀବୀ ଚିନ୍ତାଧାରା, ବୈଜ୍ଞାନିକ ଚିନ୍ତନ ଉପରେ ଧର୍ମ ଆଦୌ ପ୍ରଭାବ ପକେଇବାକୁ ଚାହୁଁନାହିଁ ।

ଭାରତରେ ଆଧ୍ୟାତ୍ମବାଦ ସହିତ ହେତୁବାଦ ଚିନ୍ତାଧାରାର ଧାରା ବି ପ୍ରବାହିତ ହେଉଛି । ଆଧ୍ୟାତ୍ମବାଦ ଆମର ପ୍ରଗତିରେ ବାଧା ଦେଉଛି କିନ୍ତୁ ହେତୁବାଦ ପ୍ରଗତିକୁ ଆଗେଇ ନେବାରେ ସାହାଯ୍ୟ କରୁଛି । ଭୌତିକ ସୁଖ ସୁବିଧାକୁ ଉପଭୋଗ କଲେ ବି ଏକବିଂଶ ଶତାବ୍ଦୀର ମଣିଷ ମଧ୍ୟଯୁଗୀୟ ମାନସିକତା ନେଇ ବଞ୍ଚି ରହିଛି । ହେତୁବାଦ ଯୋଗୁଁ ଯେତିକି ବି ସୁଯୋଗ ମିଳିଛି ତା' ଦ୍ୱାରା ଆମର ଯଥେଷ୍ଟ ପ୍ରଗତି ହୋଇ ପାରିଛି । ଏହି କାରଣରୁ ଆମେ ଆମର ପଡୋଶୀ ଦେଶ ପାକିସ୍ଥାନ, ବାଂଲାଦେଶ ଓ ଆଫଗାନିସ୍ଥାନ ଠାରୁ ପ୍ରତ୍ୟେକ କ୍ଷେତ୍ରରେ ଆଗରେ ଅଛୁ ।

ଉଦାର ଚିତ୍ତରେ ବିଶ୍ଳେଷଣ କଲେ ଏହିଭଳି ଅନେକ ଗୁଢ଼ ତଥ୍ୟ ପ୍ରକାଶ ପାଇବ । ଯେଉଁଥିରୁ ଆମେ ବୁଝି ପାରିବା ଯେ ପ୍ରଗତି ପଥରେ "ଯଥାସ୍ଥିତିବାଦ"କୁ ତ୍ୟାଗ କରିବାକୁ ହିଁ ପଡିବ । ପ୍ରକୃତିର ଏକ ଅକାଟ୍ୟ ସତ୍ୟ ହେଉଛି "ପରିବର୍ତ୍ତନ" । ଏହାକୁ ଯେତେଶୀଘ୍ର ଆମେ ଉଦାର ଚିତ୍ତରେ ଗ୍ରହଣ କରି ପାରିବା, ସେତେ ଶୀଘ୍ର ଆମ ମନରୁ ଭ୍ରମ ଦୂର ହେବ ଏବଂ ଆତ୍ମବିଶ୍ୱାସ ବୃଦ୍ଧି ହେବ ।

*******

# ଧର୍ମ ହେଉଛି ଭିକ୍ଷାବୃତ୍ତିର ଲାଇସେନ୍ସ

ମଣିଷ ବଞ୍ଚି ରହିବାପାଇଁ ମୌଳିକ ଆବଶ୍ୟକତା ଭିତରୁ ଗୋଟିଏ ହେଉଛି ଖାଦ୍ୟ। ନିଜପାଇଁ ଖାଦ୍ୟ ସଂଗ୍ରହ କରିବା ଆବଶ୍ୟକ ସର୍ତ୍ତ ହେଉଛି ପରିଶ୍ରମ। ପରିଶ୍ରମ ଦୁଇ ପ୍ରକାର। ଗୋଟିଏ ଶାରୀରିକ ଶ୍ରମ ଓ ଅନ୍ୟଟି ମାନସିକ ଶ୍ରମ। ଶାରୀରିକ ଶ୍ରମ କଷ୍ଟଦାୟକ କିନ୍ତୁ ମାନସିକ ଶ୍ରମ ସହଜ ସାଧ୍ୟ। ଶାରୀରିକ ଶ୍ରମ କରିଫସଲ ଉତ୍ପାଦନ କରୁଥିବା ଜନ ସମୂହକୁ ଚଞ୍ଚକତା ଭାବେ ପ୍ରଭାବିତ କରି, ପରୋକ୍ଷ ଭାବେ ଲାଭ ହେବାର ଲୋଭ ଦେଖେଇ ସେହି ଫସଲକୁ ନିଜ ପାଇଁ ଲୁଟି ନେଉଥିବା ଗୋଷ୍ଠୀ ହେଉଛନ୍ତି ମାନସିକ ଶ୍ରମିକ। ସେମାନଙ୍କୁ ଆମେ କାମଚୋର ଧୂର୍ତ୍ତବ୍ୟକ୍ତି ବୋଲି କହିଲେ ଭୁଲ ହେବ ନାହିଁ। ଆଦିମ କାଳରୁ ଏହି ଗୋଷ୍ଠୀ ମଣିଷ ସମାଜରେ ବିରାଜମାନ କରୁଛି। କୌଣସି ପ୍ରକାର ଶାରୀରିକ ପରିଶ୍ରମ ନ କରି ମଧ୍ୟ, ସେମାନେ ନିଜପାଇଁ ଖାଦ୍ୟ, ବସ୍ତ୍ର, ବାସଗୃହ ଓ ଅନ୍ୟାନ୍ୟ ସେବା ଅତି ସହଜରେ ଯେଉଁ ଉପାୟରେ ପ୍ରାପ୍ତ କରିଥା'ନ୍ତି, ସେଥିରୁ ଗୋଟିଏ ଉପାୟ ହେଉଛି ଭିକ୍ଷାବୃତ୍ତି।

ଧାର୍ମିକ ବ୍ୟବସ୍ଥାରେ ଦୁଇଟି ଶବ୍ଦ ବହୁଳଭାବେ ବ୍ୟବହାର ହେଉଛି। ଗୋଟିଏ "ଭିକ୍ଷା" ଓ ଅନ୍ୟଟି "ଦାନ"। ଏହି ଦୁଇଟି ଶବ୍ଦ ସହିତ ପୂଣ୍ୟ, ମୋକ୍ଷ ଏବଂ ସ୍ୱର୍ଗ ଯୋଡି ହୋଇ ଯାଇଥିବାରୁ ଭିକ୍ଷା ଓ ଦାନର ମହାତ୍ମ୍ୟ ଆହୁରି ବଢିଯାଇଛି। ଭିକ୍ଷା ଓ ଦାନର ଅର୍ଥ ଏକାଭଳି। ଭିକ୍ଷା କିମ୍ବା ଦାନ ଦେଲେ ଏହି ଜନ୍ମରେ ପ୍ରତିଦାନର ଆଶା ନାହିଁ। ଯଦି ପାଇବ ତେବେ ଆଉ ଏକ ଜନ୍ମରେ।

ଯେଉଁମାନେ ଭିକ୍ଷା ଦେଉଛନ୍ତି, ସେମାନେ "ଦାନ" ଦେବାର ପୂଣ୍ୟ ଅର୍ଜନ ଦ୍ୱାରା କିଭଳି ମୋକ୍ଷ ପ୍ରାପ୍ତକରି, କେଉଁ ସ୍ୱର୍ଗରେ ଯାଇ ରହୁଛନ୍ତି, ସେକଥା ପ୍ରତ୍ୟେକ୍ଷ ଭାବେ ଆଜିଯାଏଁ କେହି ବି ଜାଣିନାହାଁନ୍ତି। ତଥାପି ସମସ୍ତେ ଏହି ତଥ୍ୟ ଉପରେ ବିଶ୍ୱାସ କରନ୍ତି। ଯେଉଁମାନେ ଭିକ୍ଷା ଗ୍ରହଣ କରୁଛନ୍ତି ସେମାନେ ହୁଏତ ସ୍ୱର୍ଗର ଏଜେଣ୍ଟ ରୂପେ ଏଇଠି ରହି ଦାନକର୍ତ୍ତାଙ୍କୁ ସ୍ୱର୍ଗର ଟିକଟ ସପ୍ଲାଇ କରୁଛନ୍ତି।

ଭିକ୍ଷାବୃତ୍ତି ଏକ ଘୃଣ୍ୟ ପ୍ରବୃତ୍ତି । କୌଣସି ଦେଶର ସଭ୍ୟ ସମାଜ ଏହାକୁ ସ୍ୱୀକୃତି ଦେଇନାହିଁ । ପ୍ରତ୍ୟେକ ସ୍ୱାଭିମାନୀ ମଣିଷ ବି ଏହି ବୃତ୍ତିକୁ ବ୍ୟକ୍ତିଗତ ଭାବେ ଘୃଣା କରିଥାଏ । ଏଇଠି ପ୍ରଶ୍ନ ଉଠୁଛି ଯେ ତଥାପି କିଛି ବ୍ୟକ୍ତି ଏହି ତୁଚ୍ଛ ବୃତ୍ତିକୁ ଆଗ୍ରହର ସହିତ ଗ୍ରହଣ କରିଛନ୍ତି କାହିଁକି ? ସେମାନଙ୍କର କ'ଣ ଆତ୍ମସମ୍ମାନ ବା ସ୍ୱାଭିମାନ ନଥାଏ ?

ଏହାର ଉତ୍ତର ପାଇବାପାଇଁ ଆମକୁ ବେଶୀ ଗଭୀରକୁ ଯିବା ଆବଶ୍ୟକ ନାହିଁ । ଶାରୀରିକ ପରିଶ୍ରମକୁ ଭୟ କରୁଥିବା ଅଳସୁଆ ପ୍ରକୃତିର ଲୋକମାନେ ଆତ୍ମସମ୍ମାନ କ'ଣ ବୁଝି ପାରନ୍ତିନାହିଁ । ଏମାନେ ନିର୍ଲଜ୍ଜ ପ୍ରକୃତିର ଲୋକ । ଏମାନେ ଆଉ ଗୋଟିଏ ତର୍କ ଦିଅନ୍ତି ଯେ ଜଣେ ସାଧୁବ୍ୟକ୍ତିପାଇଁ ମାନ ଓ ଅପମାନ ସବୁ ସମାନ । ଆମେ ବୁଝିପାରୁନାହୁଁ ଯେ-ଅପମାନ କରାଯାଉଥିବା ବ୍ୟକ୍ତି ଜଣକ ସାଧୁବ୍ୟକ୍ତି କିପରି ହେବ ? ଏହା ଏକ ବିରୋଧାଭାଷ ନୁହେଁ କି ?

ତଥାପି ସମସ୍ତେ ଜାଣନ୍ତି ଏହି ବ୍ୟକ୍ତି (ସାଧୁ, ସନ୍ୟାସୀ)ମାନଙ୍କର ସମାଜରେ ଖୁବ୍ ସମ୍ମାନଥାଏ । କାରଣ ସେମାନେ ଧର୍ମ ଶାସ୍ତ୍ର ପଢି ପଣ୍ଡିତ ଶ୍ରେଣୀରେ ଗଣନା ହୁଅନ୍ତି । ସେମାନଙ୍କର ଭିକ୍ଷା ମାଗିବାର ଶୈଳୀ ନିଆରା । ସାଧାରଣତଃ ଘର ଘର ବୁଲି ହାତରେ ଭଙ୍ଗା ଟିଣ ପାତ୍ରଟିଏ ଧରି ଶାରୀରିକ ଅକ୍ଷମ ବ୍ୟକ୍ତିଟିଏ ନେହୁରା ହୋଇ କିଛି ଅନ୍ନ ବା ଧନ ମାଗିବା ଶୈଳୀ ସହିତ ଆମେ ସମସ୍ତେ ପରିଚିତ । ସେମାନଙ୍କ ଶାରୀରିକ ଅବସ୍ଥାକୁ ଲକ୍ଷ୍ୟ କରି ଆମେ କିଛି ଦାନ କରି ଦୁଆର ମୁହଁରୁ ତଡି ଦେଇଥାଉ । କିନ୍ତୁ ଶାରୀରିକ ଭାବେ ସଂପୂର୍ଣ୍ଣ ସୁସ୍ଥ ଥିବା ଜଣେ ବ୍ୟକ୍ତି ଗେରୁଆ ବସ୍ତ୍ର ପିନ୍ଧି, ଚିତା ଚଇତାନ କାଟି ସାଧୁ ବେଶରେ କାହାରି ଦ୍ୱାର ମୁହଁକୁ ଆସିଗଲେ, ଗୃହସ୍ଥମାନେ ତୁରନ୍ତ ଘର ଭିତରକୁ ପାଛୋଟି ଆଣନ୍ତି । ସେମାନଙ୍କୁ ଯଥାବିଧି ଖୁଆଇ, ପିଆଇ ଦାନ ଆକାରରେ କିଛି ଟଙ୍କା ଦେଇ ବିଦାୟ କରିଥା'ନ୍ତି ।

ପ୍ରଥମ ଧରଣର ବ୍ୟକ୍ତି ଆତ୍ମସମାନ ହାନୀ ହେଉଥିବା ଅନୁଭବ କଲେ ବି ନିରୂପାୟ ହୋଇ ଭିକ୍ଷାବୃତ୍ତିକୁ ଆଦରି ନିଅନ୍ତି । କିନ୍ତୁ ଦ୍ୱିତୀୟ ଧରଣର ଭଣ୍ଡ ବ୍ୟକ୍ତି

ଭିକ୍ଷାବୃତ୍ତି ଯୋଗୁଁ ଆତ୍ମସମ୍ମାନହାନୀ ହେଉଥିବା ଅପମାନ ବୋଧରୁ ମୁକ୍ତ ଅଛି । ତା'ର ଯୁକ୍ତି ହେଉଛି - ମୁଁ ଜଣେ ଶାସ୍ତ୍ର ପଣ୍ଡିତ । ମୋର ଆଶୀର୍ବାଦରେ ଜନସାଧାରଣଙ୍କ କଲ୍ୟାଣ ହେଉଛି । ସେମାନଙ୍କ କଲ୍ୟାଣପାଇଁ ମୁଁ ଭିକ୍ଷା ଗ୍ରହଣ କରୁଛି ।

ଭିକ୍ଷାବୃତ୍ତି ଭାରତର ଅନେକ ଧାର୍ମିକ କୁସଂସ୍କାର ଭିତରୁ ଗୋଟିଏ କିନ୍ତୁ ଆମର ଧର୍ମଶାସ୍ତ୍ର ଓ ଧାର୍ମିକ ପରମ୍ପରାରେ ଭିକ୍ଷା ବୃତ୍ତିକୁ ଏକ ପବିତ୍ର ଏବଂ ମହତ କର୍ମ ଭାବେ ମାନ୍ୟତା ଦିଆଯାଇଛି । ପ୍ରାଚୀନ ସଂସ୍କୃତିରେ ଗୁରୁକୁଳ ଶିକ୍ଷା ପ୍ରଣାଳୀରେ ବ୍ରହ୍ମଚାରୀ ଶିଷ୍ୟମାନଙ୍କୁ ଭିକ୍ଷାମାଗି ଗୁରୁଙ୍କୁ ଦେଇ ଶିକ୍ଷା ପ୍ରାପ୍ତ କରିବା ବିଧାନ ଥିଲା । ବିଶେଷ କରି ବ୍ରାହ୍ମଣ ସମାଜ ଭିକ୍ଷାଦାନ ପାଇଁ ଯେଉଁ ଷଟ୍ କର୍ମର ନିର୍ଦ୍ଦେଶ ଅଛି । ସେଥିରେ ଦାନ ଗ୍ରହଣ କରିବା ଏକ ପରମ କର୍ତ୍ତବ୍ୟ ବୋଲି ଲେଖାଅଛି ।

ଧର୍ମଭୀରୁ ଲୋକମାନଙ୍କ ସଂଖ୍ୟା ବୃଦ୍ଧି ପାଉଥିବାରୁ ସେମାନଙ୍କୁ ଠକି, ବୋକାବନେଇ ଧନ ସଂଗ୍ରହ କରିବାପାଇଁ ଅନେକ ସଂଖ୍ୟାରେ କାମଚୋର, ଧୂର୍ତ୍ତ ଓ ଭଣ୍ଡ ବ୍ୟକ୍ତି ଭିକ୍ଷାବୃତ୍ତିକୁ ଏକ ଲାଭଦାୟକ ଧନ୍ଦା ବନେଇ ଦେଉଛନ୍ତି । ଭିକ୍ଷା ମାଗିବାର ବିଭିନ୍ନ କୌଶଳ ଦିନକୁ ଦିନ ଆବିଷ୍କାର ହେଉଛି । ରେଳରେ ଯାତ୍ରା କରୁଥିବା ସମୟରେ ବିଭିନ୍ନ ପ୍ରକାର ଅଭିନୟ କରି ଭିକ୍ଷା ମାଗୁଥିବା ଦୃଶ୍ୟ ଦେଖିବାକୁ ମିଳେ । କିଏ ଅନ୍ଧ ତ ପୁଣି କିଏ ମୂକବଧିର ଅଭିନୟ କରୁଛି । ମୂକବଧିର ଅଭିନୟ କରୁଥିବା ପିଲାମାନେ ଯାତ୍ରୀମାନଙ୍କୁ ଗୋଟିଏ ଲେଖାଏଁ ପ୍ରଚାରପତ୍ର ଧରେଇ ଦିଅନ୍ତି । ସେଥିରେ ବନ୍ୟା କିମ୍ବା ବାତ୍ୟାରେ କ୍ଷତି ହୋଇଥିବା କଥା ଲେଖା ହୋଇଥାଏ, କିମ୍ବା କେହି ରୋଗ ଶଯ୍ୟାରେ ପଡି ମୃତ୍ୟୁ ସହିତ ସଂଘର୍ଷ କରୁଥିବା କାହାଣୀ ଲେଖା ହୋଇଥାଏ । ପ୍ରଚାର ପତ୍ର ଫେରସ୍ତ ନେବାବେଳେ ଟଙ୍କା ମାଗି ନିଅନ୍ତି । ସେମାନଙ୍କୁ ସୁବିଧା ଏତିକି ଯେ ଘଟଣା ସଂପର୍କରେ କେହି କିଛି ପଚାରିଲେ, ସେମାନେ କିଛି କହି ପାରିବେ ନାହିଁ । ଅର୍ଥାତ୍ ଧର୍ମଭିରୁ ଜନତାଙ୍କୁ କେଉଁଭଳି Emtoional blackmail କରିହେବ, ସେହି ବିଦ୍ୟାରେ ସମସ୍ତେ ପାରଙ୍ଗମ ହୁଅନ୍ତି ।

ରେଳଯାତ୍ରା ସମୟରେ ମୁଁ ଥରେ ଗୋଟିଏ ଅଳ୍ପବୟସ୍କା ଭିକାରୁଣୀ ଝିଅକୁ ପାଖକୁ ଡାକି ତା'ସହିତ ସ୍ନେହଶିକ୍ତ ଭାଷାରେ କଥାବାର୍ତ୍ତା କଲି । ମୋର ଆନ୍ତ୍ରିୟତାରେ

ପ୍ରଭାବିତ କରି ତାକୁ ପଚାରିଲି-ତୁମେ ଯେଉଁ ପ୍ରଚାର ପତ୍ର ସବୁ ଲୋକଙ୍କୁ ବାଣ୍ଟୁଛ, ସେଗୁଡିକ କେଉଁ ପ୍ରେସ୍‌ରେ କେତେ ଟଙ୍କା ଦେଇ ଛାପୁଛ ? ସେ ଖୁବ୍ ସହଜ ଭାବେ ଉତ୍ତର ଦେଲା - ନାଇଁ ଆଜ୍ଞା ଆମେ କାହିଁକି ଛାପିବୁ ? ପ୍ରେସରେ ଛପା ହୋଇ ଆଗରୁ ରଖିଥାନ୍ତି । ଆମକୁ ଯେତେବେଳେ ଯେଉଁ ପ୍ରକାର ପତ୍ର ଦରକାର ପଚାଶ ଟଙ୍କାରେ କିଣି ନେଇଆସୁ । ମୁଁ ତା'କଥା ଶୁଣି ଆଶ୍ଚର୍ଯ୍ୟ ହେଲି ଏଇଥିପାଇଁ ଯେ ସାଧାରଣ ଜନତା କେତେ ସହଜରେ ଠକି ହୋଇପାରୁଛନ୍ତି ?

ଆମର ସମ୍ବିଧାନରେ କାନୁନ୍ ତିଆରି କରି ଭିକ୍ଷାବୃତ୍ତିକୁ ନିଷେଧ କରାଯାଇଛି ସତ କିନ୍ତୁ ଭାରତରେ ଭିକ୍ଷା ବୃତ୍ତି ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । କାରଣ "ଭିକ୍ଷାଦାନ ମହାପୁଣ୍ୟ" ବୋଲି ଜନତା ବିଶ୍ୱାସ କରୁଛନ୍ତି ।

ପ୍ରାୟ ପଚିଶ ବର୍ଷ ତଳେ ମଥୁରା ନିକଟସ୍ଥ ବୃନ୍ଦାବନରେ ଭିକ୍ଷା ବୃତ୍ତି କରୁଥିବା ଆଳରେ ପୋଲିସ କିଛି ସାଧୁବାବାଙ୍କୁ ଗିରଫ କରି କୋର୍ଟକୁ ଚାଲାଣ କରିଦେଲେ । ଏହି ଘଟଣା ପରେ ସେଠାରେ ଥିବା ସମସ୍ତ ସାଧୁ ସନ୍ୟାସୀଙ୍କ ନିଦ ହଜିଗଲା । ସେମାନେ ଯଥାଶୀଘ୍ର ଗୋଟିଏ ମିଟିଂ ଆୟୋଜନ କରି ଘୋଷଣା କଲେ - "ପୋଲିସ ଅଯଥା ଆମକୁ ହଇରାଣ କରୁଛି । ଭିକ୍ଷା ଓ ଦାନ ଗ୍ରହଣ କରିବା ଆମର ଏକ ଜନ୍ମସିଦ୍ଧ ଅଧିକାର । ଏହାକୁ ଯିଏ ବି ବିରୋଧ କରିବ ସେ ନିଶ୍ଚୟ ନର୍କଗାମୀ ହେବ ।"

ଏହି ଆନ୍ଦୋଳନର ମୁଖିଆ ଥିଲେ ବାବା ଶ୍ରୀପାଦ ସ୍ୱାମୀ । ବୃନ୍ଦାବନ ସ୍ଥିତ "ବ୍ରଜ ଏକାଡେମି" ନାମକ ସରକାରୀ ଅନୁଦାନ ପ୍ରାପ୍ତ ସଂସ୍ଥାର ସେ ହେଉଛନ୍ତି ସଂସ୍ଥାପକ । ରାଜନୈତିକ ଦଳ ସହିତ ବାବାଙ୍କର ଘନିଷ୍ଠ ସଂପର୍କ ଥିବା କଥା ଶୁଣାଯାଏ । ସେ ଗୋଟିଏ ଘୋଷଣା ପତ୍ରରେ ପ୍ରଭାବଶାଳୀ ତର୍କ ପ୍ରସ୍ତୁତ କରିଥିଲେ । "ବ୍ରଜଧାମରେ ଭିକ୍ଷା ଗ୍ରହଣକରିବା ଏକ ବୃତ୍ତି ନୁହେଁ ।" ଏଠାରେ "ମଧୁକରୀ" ନାମକ ଏକ ବିଶେଷ ପରମ୍ପରା ରହିଛି । ବ୍ରଜରେ ଭିକ୍ଷା ପ୍ରାପ୍ତି ନୁହେଁ, ଏହା ତ୍ୟାଗର ପ୍ରତୀକ । ପ୍ରାଚୀନ ଋଷି ପରମ୍ପରାରେ ତ୍ୟାଗ ବୃତ୍ତି ଦ୍ୱାରା ଜୀବନ ରକ୍ଷା କରିବା ହେଉଛି

ସବୁଠାରୁ ଶ୍ରେଷ୍ଠଧର୍ମ। ସାଧୁମାନେ ସଂଗ୍ରହ କରିବା ବୃତ୍ତି ଦ୍ୱାରା ପ୍ରଭାବିତ ନ ହେବାପାଇଁ ସଦା ପ୍ରୟାସ କରିଥା'ନ୍ତି। ପ୍ରାଚୀନ ପରମ୍ପରା ଅନୁସାରେ ମନୁଷ୍ୟ ଧରା ଉପରେ ବୋଝ ହୋଇ ରହିବାକୁ ଚାହୁଁ ନଥିଲା। ସେହି ପରମ୍ପରା ସାଧୁ ସମାଜରେ ଥିଲା କିନ୍ତୁ ତାହା ବିକୃତ ହୋଇ ଆଜି ଭିକ୍ଷା ବୃତ୍ତିରେ ପରିଣତ ହୋଇଯାଇଛି। ବୋଝ ଅନୁଭବ କରୁଥିବା ସାଧୁ ଏବଂ ସାଧାରଣ ସାଧୁମାନଙ୍କ ଭିତରେ ରହୁଥିବା ପ୍ରଭେଦକୁ ଚିହ୍ନିବାକୁ ହେବ। ସମାଜରେ ଏଭଳି ଜାଗୃତି ସୃଷ୍ଟି କରିବାକୁ ହେବ ଯାହା ଦ୍ୱାରା ମନୁଷ୍ୟ ସବୁ କିଛି ତ୍ୟାଗ କରି କେବଳ ଭିକ୍ଷା ବୃତ୍ତି କରିବାକୁ ଆଗେଇ ଯିବ। ମଣିଷ କେବଳ ବଞ୍ଚିବାପାଇଁ ଖାଇବା ଉଚିତ, ଖାଇବାପାଇଁ ବଞ୍ଚିବା ଉଚିତ ନୁହେଁ। ଏହି ଭାବନା ସମସ୍ତଙ୍କ ମନରେ ଜାଗ୍ରତ କରାଇବା ଉଚିତ।" ପ୍ରଶ୍ନ ଉଠୁଛି - ସମସ୍ତେ ଯଦି ତ୍ୟାଗ କରିଦେବେ, ତେବେ ଭିକ୍ଷାଦେବ କିଏ ?

ଅନ୍ୟଜଣେ ଧାର୍ମିକ ନେତା କହିଲେ - ମଧୁକରୀ ପାଳନ କରିବାପାଇଁ ସରକାର କୌଣସି ପ୍ରତିବନ୍ଧ କରି ନାହାଁନ୍ତି। ତେଣୁ ପୋଲିସ୍‌ମାନଙ୍କୁ ପ୍ରତିବାଦ କରିବାପାଇଁ ଏବଂ ମଧୁକାରୀ ପରମ୍ପରାକୁ ରକ୍ଷା କରିବାପାଇଁ ସାଧୁ ସନ୍ୟାସୀଙ୍କ ସହିତ ଜନସାଧାରଣ ବି ଆନ୍ଦୋଳନ କରିବା ଉଚିତ। ପ୍ରଶ୍ନ ଉଠୁଛି - ମଧୁକରୀ ପରମ୍ପରା ଦ୍ୱାରା ଜନ ସାଧାରଣଙ୍କ କ'ଣ ଫାଇଦା ହେବ ?

ଜଣେ ତତ୍କାଳୀନ ମନ୍ତ୍ରୀ କହିଲେ - ଗୋଟିଏ ସମିତି ଗଠନ କରାଯିବା ଉଚିତ। ସେମାନେ ନିର୍ଦ୍ଦୋଷ ସାଧୁମାନଙ୍କୁ ପୋଲିସ୍ କବଳରୁ ରକ୍ଷା ପାଇବାପାଇଁ ଏକ ପରିଚୟ ପତ୍ର ଦେବେ। ଅର୍ଥାତ୍ ଭିକ୍ଷା ବୃତ୍ତିପାଇଁ ଲାଇସେନ୍‌ସ ସପ୍ଲାଇ କରାଯିବ। ଏହା କ'ଣ ଠିକ୍ ହେବକି ?

ଉପରୋକ୍ତ ସମସ୍ତ ତର୍କ ଓ ବିଚାର ଆମର ସମାଜପାଇଁ କେତେ କ୍ଷତିକାରକ, ସେକଥା ପ୍ରତ୍ୟେକ ସଚେତନ ନାଗରିକ ବୁଝି ପାରୁଥିବେ। ଧର୍ମ ନାମରେ ଧନ୍ଦା କରୁଥିବା ଲୋକମାନେ ସର୍ବଦା ଚାହାଁନ୍ତି ଭିକ୍ଷା ବୃତ୍ତି ଏବଂ ଧାର୍ମିକ ଦାନ ଭାବନା ଲୋକମାନଙ୍କ ମନରେ ଆହୁରି ବେଶୀ ବିକାଶ ହେଉ।

ଏଇଠି ପ୍ରଶ୍ନ ଉଠୁଛି ଯେ ସବୁକିଛି ତ୍ୟାଗ କରି ଭିକ୍ଷା ବୃତ୍ତିର ବିକାଶ କରିବାପାଇଁ ଧର୍ମଗୁରୁମାନେ କାହିଁକି ଚାହୁଁଛନ୍ତି ?

ଲୋକମାନଙ୍କୁ ଭୂଆଁ ବୁଲେଇ ପରୋକ୍ଷ ଭାବେ ନିଜର ସ୍ୱାର୍ଥ ସାଧନା କରିବା ହିଁ ସେମାନଙ୍କର ଅସଲ ଉଦ୍ଦେଶ୍ୟ ନୁହେଁ କି ?

ସତରେ ଦେଖିବାକୁଗଲେ ଭାରତୀୟଙ୍କ ପାଖରେ କଅଣ ବା ଅଛି ତ୍ୟାଗ କରିବାପାଇଁ ? ଯେଉଁ ଦେଶରେ ଗରିବ ଲୋକଙ୍କ ସଂଖ୍ୟା ଅଧିକ, ସେ ଦେଶରେ ତ୍ୟାଗ ଏକ ଆତ୍ମପ୍ରବଞ୍ଚନା ନୁହେଁ କି ? ଅନ୍ୟ ପକ୍ଷରେ ଦେଖନ୍ତୁ - ଯାହା ପାଖରେ ତ୍ୟାଗ କଲା ଭଳି କିଛି ଅଛି, ତା'ପାଇଁ ଭିକ୍ଷା ମାଗିବାର ଆବଶ୍ୟକତା କଅଣ ?

ଭାରତକୁ ଧନବାନ ଏବଂ ସମୃଦ୍ଧ କରିବାପାଇଁ ଜନତାଙ୍କୁ ପ୍ରେରିତ କରିବା ଉଚିତ, ଆଳସ୍ୟ ତ୍ୟାଗ କରି କଠିନ ପରିଶ୍ରମ କରିବାପାଇଁ ଶିକ୍ଷା ଦେବା ଉଚିତ। ସବୁକିଛି ତ୍ୟାଗ କରି ଭିକାରୀ ସାଜିବା ଭଳି ତର୍କହୀନ ଉପଦେଶର ଆବଶ୍ୟକତା ନାହିଁ। କାରଣ ଆମେ ଗତ ଦୁଇ ହଜାର ବର୍ଷ ଗୋଲାମ ଥିଲୁ ଏବଂ ଦେଶ ସ୍ୱାଧୀନ ହେବାପରେ ବି ଭିକାରୀଙ୍କ ଭଳି ଜୀବନ ବିତାଉଛୁ।

ଭିକ୍ଷାବୃତ୍ତି ତ୍ୟାଗ ନାମରେ ହେଉ କିମ୍ବା ବୃତ୍ତି ନାମରେ ହେଉ ଏହା ପୂରା ସମାଜପାଇଁ ଏକ ଅଭିଶାପ। ଏହାକୁ ଦେଶରୁ ଦୂର କରିବା ଉଚିତ। ସୁଧି ଜନତା ଯଦି ଭିକ୍ଷା ଦେବା ବନ୍ଦ କରି ଦେବେ ତେବେ ହିଁ ଏହି ପରମ୍ପରା ବନ୍ଦ ହେବ। ଯେଉଁମାନେ ସତରେ ଅକ୍ଷମ ଓ ଅସହାୟ ସେମାନଙ୍କ ପାଳନ ପୋଷଣପାଇଁ ସରକାର ଏବଂ ବେସରକାରୀ ସଂସ୍ଥା ଖୋଲା ଯାଇପାରିବ।

ଯେଉଁ ସୁସ୍ଥ ସବଳ ସାଧୁ ସନ୍ୟାସୀମାନେ ମଠ, ମନ୍ଦିର ଓ ଆଶ୍ରମରେ ବସି ମାଗଣାରେ ଅନ୍ନଧ୍ୱଂସ କରୁଛନ୍ତି, ସେମାନଙ୍କୁ ଜବରଦସ୍ତି ନେଇ କ୍ଷେତରେ କାମ କରାଇବା ଉଚିତ। ବେକାର ବସୁଥିବା ମାନବ ସଂବଳକୁ ଉପଯୋଗ କରି ଅନେକ ଫସଲ ଉତ୍ପାଦନ କରାଯାଇ ପାରନ୍ତା।

*******

# ଯମପୁରର କାହାଣୀ, ଏକ ପ୍ରହେଳିକା

ହିନ୍ଦୁ ଧର୍ମର ମାନ୍ୟତା ପ୍ରାପ୍ତ ଅଷ୍ଟାଦଶ ପୁରାଣମାନଙ୍କ ମଧ୍ୟରେ, ଗରୁଡ ପୁରାଣର ଏକ ବିଶିଷ୍ଟ ମହତ୍ତ୍ୱ ରହିଛି, କାରଣ ମଣିଷ ନିଜ ଜୀବନ କାଳରେ କରିଥିବା ପାପ ଓ ପୂଣ୍ୟ କର୍ମ ଅନୁସାରେ, ତା'ର ମୃତ୍ୟୁ ପରେ, ନର୍କକୁ ଯାଇ ଦଣ୍ଡ ଭୋଗ କିମ୍ବା ମୋକ୍ଷ ପ୍ରାପ୍ତ କରି ସ୍ୱର୍ଗ ଭୋଗ କରିବା ଭଳି ବର୍ଣ୍ଣନା, ଏହି ପୁରାଣରେ ଉଲ୍ଲଖ ଅଛି। ମଣିଷର ଅନେକ ପ୍ରକାର ଭୟ ଭିତରେ, ମୃତ୍ୟୁ ଭୟ ସବୁଠାରୁ ଯନ୍ତ୍ରଣା ଦାୟକ। ମୃତ୍ୟୁ ପରେ ମଣିଷକୁ ସମସ୍ତ ଭୟରୁ ମୁକ୍ତି ମିଳି ଯାଉଥିବା କଥା ସତ ବୋଲି ସମସ୍ତେ ଜାଣିଥିଲେ ବି, ଦଣ୍ଡ ମିଳୁଥିବା କଥା ଶୁଣିଲେ, ବଞ୍ଚିଥିବା ମଣିଷମାନେ ଏକ ଅହେତୁକ ଭୟ ମନରେ ସ୍ଥାପନ କରି ଆତଙ୍କିତ ହୋଇରହନ୍ତି।

ଗରୁଡ ପୁରାଣକୁ ଯେଉଁ ସରଳ ବିଶ୍ୱାସୀ ଲୋକମାନେ ପଢୁଛନ୍ତି କିମ୍ବା ଶୁଣିଛନ୍ତି, ସେମାନେ ପୁରାଣ ବର୍ଣ୍ଣିତ ତଥ୍ୟ ଗୁଡିକୁ କେତେ ଦୂର ବୁଝି ପାରୁଛନ୍ତି, ତାହା ହିଁ ଏକ ବଡ ପ୍ରଶ୍ନ।

ଏଇଠି ଆମେ ମୂଳ ସଂସ୍କୃତ ଗରୁଡ ପୁରାଣରୁ ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ନନ୍ଦଙ୍କ ଦ୍ୱାରା ପଦ୍ୟାନୁବାଦିତ ଏବଂ ବୀଣାପାଣି ପୁସ୍ତକ ଭଣ୍ଡାର(କଟକ)ରେ ଉପଲବ୍ଧ ଗରୁଡ ପୁରାଣ ଉପରେ, ମୁକ୍ତ ମନରେ ବିଚାର କରିବା।

ଗରୁଡ ପୁରାଣ ମୋଟ ଅଠର ଗୋଟି ଅଧ୍ୟାୟରେ ସଂପୂର୍ଣ୍ଣ ହୋଇଛି। ପ୍ରଥମରୁ ଶେଷ ଅଧ୍ୟାୟ ପର୍ଯ୍ୟନ୍ତ, ଯେଉଁ ସବୁ ତଥ୍ୟ ଓ କାହାଣୀ ବର୍ଣ୍ଣନା କରାଯାଇଛି, ସେଗୁଡିକ ପଢିବାପରେ, ଆମ ଭଳି ସାଧାରଣ ଜ୍ଞାନ ରଖୁଥିବା କିଛି ମଣିଷମାନଙ୍କ ମନରେ, କିଛି ମୌଳିକ ପ୍ରଶ୍ନ ଉଠିବା ସ୍ୱଭାବିକ। ସୁଧୀ ଏବଂ ବିଜ୍ଞ ପାଠକମାନେ, ଆମ ମନର ଶଙ୍କାଗୁଡିକୁ ତର୍କ ସଂଗତ ଓ ବିଜ୍ଞାନ ସମ୍ମତ ଉତ୍ତର ଦେଇ ନିବାରଣ କରି ଦେଲେ, ଆମେ ଚିର କୃତଜ୍ଞ ରହିବୁ। ପ୍ରଥମ ପ୍ରଶ୍ନ-ସେ ଯୁଗରେ ଗରୁଡ ଏକ

ପକ୍ଷୀ ଜାତୀୟ ପ୍ରାଣୀ ହୋଇ ମଧ୍ୟ, ମଣିଷମାନଙ୍କ ଭାଷାରେ କଥାବାର୍ତ୍ତା କରି ପାରୁଥିଲା କି ?

ଦ୍ୱିତୀୟ ପ୍ରଶ୍ନ - ଗରୁଡ ନିଜ ପକ୍ଷୀ ଜୀବନ ସଂପର୍କରେ ଜାଣିବା ପରିବର୍ତ୍ତେ ମଣିଷମାନଙ୍କ ଜୀବନ ସଂପର୍କରେ ଜାଣିବାପାଇଁ ବିଷ୍ଣୁଙ୍କୁ-ପ୍ରଶ୍ନ କରିଥିଲା କାହିଁକି ? ତୃତୀୟ ପ୍ରଶ୍ନ - ମଣିଷ ଜାତିର ଗୁଢ ତତ୍ତ୍ୱ ଜାଣିବା ଓ ବୁଝିବାପରେ ପକ୍ଷୀ ଜାତିର କ'ଣ ଲାଭ ହେଲା ?

ଏଥର ଆସନ୍ତୁ ପ୍ରଥମ ଅଧ୍ୟାୟରେ ଉଲ୍ଲେଖ ଥିବା ସୃଷ୍ଟି ସର୍ଜନା ବୃତ୍ତାନ୍ତକୁ ବିଚାର କରିବା । ବ୍ୟାସ ଦେବଙ୍କ ରଚିତ ଗରୁଡ ପୁରାଣକୁ ବ୍ୟାସ ଶିଷ୍ୟସୁତ ମହାମୁନି ନୈମିଷାରଣ୍ୟରେ ଯଜ୍ଞ କରୁଥିବା ଋଷିମାନଙ୍କୁ ଶୁଣାଇଥିଲେ । ସୁତମୁନି କହିଲେ, ଦିନେ ଗରୁଡ ପକ୍ଷୀ ବୈକୁଣ୍ଠପୁରକୁ ଯାଇ, ସୃଷ୍ଟିର ରହସ୍ୟ ଜାଣିବାପାଇଁ, ବିଷ୍ଣୁଙ୍କୁ ଅନୁରୋଧ କଲା । ବିଷ୍ଣୁ ଖୁସି ହୋଇ ଗରୁଡକୁ ସୃଷ୍ଟି ରହସ୍ୟ ସହିତ, ଯମପୁରରେ ମଣିଷ କିଭଳି ପାପ କର୍ମର ଦଣ୍ଡ ଭୋଗ କରିଥାଏ, ସେ ବିଷୟରେ ବୁଝେଇ ଥିଲେ ।

ଆମେ ଦେଖୁଛୁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ସଂପର୍କରେ, ବିଭିନ୍ନ ଧର୍ମ ସଂପ୍ରଦାୟଙ୍କ ମତ ଓ ବିଶ୍ୱାସ ଅଲଗା ଅଲଗା ରହିଛି । ଆଧୁନିକ ବିଜ୍ଞାନର ମତ ସମସ୍ତ ଧର୍ମୀୟ ମତଠାରୁ ସଂପୂର୍ଣ୍ଣ ଭାବେ ଅଲଗା ରହିଛି । ଗରୁଡ ପୁରାଣ ଅନୁସାରେ -

"ଜଳବେଷ୍ଟିତ କରଣ ପ୍ରଭୁ ନିରାକାର ।
ବଟପୁଟେ ନିଦ୍ରାଗଲେ ସେହି ଦାମୋଦର ।
ସହସ୍ର ସହସ୍ର ବର୍ଷ ବିତିଣ ଯାଆନ୍ତେ ।
କି କରିବି ବୋଲି ଠାକୁରାଣୀ ମନେ ଚିନ୍ତେ ।
ପୁର୍ନବାର ଏ ପ୍ରଳୟ କେଉଁ ପରାଭବେ,
ଧ୍ୱସଂକରି ନୂଆ ସୃଷ୍ଟି ଅପର୍ଣ୍ଣା ସୃଜିବେ ।
ବହୁକାଳ ଚିନ୍ତା କରି ଦେବୀ ଠାକୁରାଣୀ,
ସ୍ୱପ୍ନ ଦେଖାଇବା ଆଶେ ଚିନ୍ତିଲେ ତକ୍ଷଣି ।

ମହାମାୟୀ ନିରାକାର ପାଶକୁ ଗମିଲେ,
ଭିନ୍ନ ଭିନ୍ନ ରୂପେ ଦେବୀ ସ୍ୱପ୍ନ ଦେଖାଇଲେ ।
କାମିନୀ ରୂପରେ ମାତା ବସିଲେ ଅଙ୍କରେ,
ଯୋଗ ନିଦ୍ରା ସାରି ଘାରିଲେ ସେ ନୟନରେ ।
ମଦନ ରୂପରେ ଦେବୀ ଶରୀରରେ ପଶିଲେ,
ମୋହିନୀ ରୂପରେ ଦେବୀ ରତିକ୍ରିୟା କଲେ ।
ଘାତକିନୀ ସାଜି ଦେବୀ ରତିକ୍ରିୟା କଲେ ।
ଘାତକିନୀ ସାଜି ଦେବୀ ବ୍ରହ୍ମରନ୍ଧ୍ର କାଟେ,
ଶୁକ୍ର ରହି ନ ପାରିଲା ପ୍ରଭୁଙ୍କର ଘଟେ ।
ସ୍ଖଳନ ହୋଇଲା ରେତ ସହସା ବିଷ୍ଣୁର,
ତତ୍‌କ୍ଷଣ ନିରାକାର ହେଲେ ହୀନବଳ ।
ତାହାକାଣି ଠାକୁରାଣୀ ମହୁରୀ ବାସିନୀ,
ଚେତନା ରୂପେ ପ୍ରଭୂଙ୍କ ପାଶେ ଗଲେ ପୁଣି ।
ଯୋଗନିଦ୍ରା କରାଇଲେ ତ୍ୟାଗ ଯେ ପାର୍ବତୀ,
ବୀର୍ଯ୍ୟ ସ୍ଖଳନ ହେଉଛି ହେଜେ ରମାପତି ।
ବିଚଳିତ ହୋଇ ବିଷ୍ଣୁ କାଢି ବାମକର,
ଧଇଲେ ରେତକୁ ହସ୍ତପୁଟେ ଦାମୋଦର ।
ହସ୍ତରେ କି ଜଳ କେବେ ରହିବ ସେ ଶୁକ୍ର,
ତିନି ଅଙ୍ଗୁଷ୍ଠି ପଥରେ ଗଡିଲା ସେ ଶୁକ୍ର ।
ତ୍ରିବୁନ୍ଦା ହୋଇଣ ସେହି ପୟୋଧିଜଳରେ,
ପଡିଗଲା ଦାମୋଦର ରେତଟି ସଧୀରେ ।
ଅମୋଘ ବୀର୍ଯ୍ୟ ସେ ଅଟେ ଦାମୋଦରଙ୍କର,
ଜଳେ ପଡି ଅବିଳମ୍ବେ ହୋଇଲା ଅସ୍ଥିର ।"

ସମୁଦ୍ରରେ ବିଷ୍ଣୁଙ୍କ ହାତରୁ ବହି ପଡିଥିବା ତିନି ବିନ୍ଦୁ ବୀର୍ଯ୍ୟରୁ ପ୍ରଥମେ ବ୍ରହ୍ମା, ଦ୍ୱିତୀୟରେ ବିଷ୍ଣୁ ଓ ତୃତୀୟରେ ଶିବଙ୍କୁ ଯାତ କରାଇଲେ । ସେହି ତିନି ପୁତ୍ରଙ୍କୁ ସୃଷ୍ଟିର ସର୍ଜନା କରିବାପାଇଁ ବିଷ୍ଣୁ ନିର୍ଦ୍ଦେଶ ଦେଲେ ।

ଏଇଠି ଗରୁଡ ପୁରାଣ ବର୍ଣ୍ଣିତ ସୃଷ୍ଟି ସର୍ଜନା ରହସ୍ୟ ପଢିଲେ, ମନରେ ଅନେକ ପ୍ରଶ୍ନ ଉଠୁଛି ।

(୧) ବ୍ରହ୍ମାଣ୍ଡ ସୃଷ୍ଟି ହେବା ପୂର୍ବରୁ ମହାମାୟା ଓ ବିଷ୍ଣୁ ବିଦ୍ୟମାନ ଥିଲେ କି ?

(୨) ମହାମାୟା ବା ଆଦିମାତା ଯୋଗମାୟା ବଳରେ ବିଷ୍ଣୁଙ୍କ ସହିତ ରତିକ୍ରିୟା କଲେ କିନ୍ତୁ ବିଷ୍ଣୁଙ୍କ ଅମୋଘ ବୀର୍ଯ୍ୟ ବାହାରେ ସ୍ଖଳିତ ହେଲା କାହିଁକି ?

(୩) ବିଷ୍ଣୁଙ୍କ ହାତରୁ ବୋହି ପଡିଥିବା ତିନି ବିନ୍ଦୁ ବୀର୍ଯ୍ୟରୁ ଯଦି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଜାତ ହେଲେ, ତେବେ ବୀର୍ଯ୍ୟ ସ୍ଖଳିତ କରିଥିବା ବିଷ୍ଣୁ କିଏ ?

ଦ୍ୱିତୀୟ ଅଧ୍ୟାୟରେ - "ଯମପୁରୀର ପାପକର୍ମର ଫଳ ଓ ପିଣ୍ଡଦାନ ବର୍ଣ୍ଣନା" ରହିଛି । ପୁରାଣରେ ଯମପୁରର ରହସ୍ୟମୟ ଦୃଶ୍ୟ, ଯମଦୂତମାନଙ୍କ ବ୍ୟବହାରରେ ନିଷ୍ଠୁରତା ଆଦି ବର୍ଣ୍ଣନା କରାଯାଇଛି ।

"ଅତୀବ ଦୁର୍ଗମ ଅଟେ ସେହି ଯମପୁର,
ପଶେ ନାହିଁ ସୂର୍ଯ୍ୟଙ୍କର କିରଣ ସେଠାରେ ।
ସୂର୍ଯ୍ୟ ଚନ୍ଦ୍ର ବିନା ତାହା ଦିଶେ ଅନ୍ଧକାର,
ପୂରିଛନ୍ତି ହିଂସ୍ରଜନ୍ତୁ ଭିତରେ ତାହାର ।
ସିଂହ ବ୍ୟାଘ୍ର ସର୍ପ ଆଦି ରହିଛନ୍ତି ଯେତେ,
ପ୍ରାଣୀକୁ ଦେଖିଲେ ନାଶ କରନ୍ତି ତୁରିତେ ।
ଯେ ଜନ ହାବୁଡେ ତାଙ୍କ ପଡିଯାଏ କାଣ,
କେବେ ହେଲେ ରହେ ନାହିଁ ତା'ପୈତୃକ ପ୍ରାଣ ।
ମଳମୂତ୍ର ପୂଜ ନାଳ ଆଦିରେ ଯେ ପୂର୍ଣ୍ଣ,
ହୋଇଥାଏ ମନ ରଖ ସେ ନର୍କ ଭୁବନ ।
ଦୁର୍ଗନ୍ଧ ସର୍ବଦା ନିରିଗତ ହୋଇଥାଏ,
ଯେଉଁ ଆଡେ ଚାହିଁ ବିଷ୍ଠା ପରିପୂର୍ଣ୍ଣ ଥାଏ ।
କଣ୍ଟକ ପୂର୍ଣ୍ଣ ଅଟଇ ସେହି ସ୍ଥାନ ଗୋଟି,
ଯମଦୂତେ ଅସ୍ତ୍ର ଧରି ବୁଲୁଣ ଥାଆନ୍ତି ।"

କଣ୍ଟକମୟ ପଥରେ ଯମଦୂତ ଗଣ,
ନିଅନ୍ତି ତପ୍ତ ତଇଳେ ପକାନ୍ତି ସେ ଜାଣ।
ବିଭିନ୍ନ ପ୍ରକାରେ ମାଡ ଦିଅନ୍ତି ତାହାଙ୍କୁ,
କୀଟ ପୂର୍ଣ୍ଣ ସ୍ଥାନେ ଛାଡି ଦିଅନ୍ତି ଯେ ତାଙ୍କୁ।
କ୍ଷୁଧା ତୃଷାକାଳେ ଅନ୍ନ ଅବା ଜଳଦାନ,
ନ କରିଣ ଏଣୁ ତେଣୁ କରନ୍ତି ବଚନ।"

ଯମପୁରର ଏହି ବର୍ଣ୍ଣନା ପଢିଲେ ଲାଗୁଛି, ଯେମିତି ଯମପୁରଟି ପୃଥିବୀର ଯେ କୌଣସି ଦେଶ ବା ରାଜ୍ୟର ଗୋଟିଏ ଅପନ୍ତରା ଓ ବର୍ଜିତ ଘନ ଜଙ୍ଗଲରେ ଅବସ୍ଥିତ। ଏଥିରେ ମଣିଷକୁ ଦଣ୍ଡ ଦେବାପାଇଁ ଯେତେ ପ୍ରକାର ବିଧି ଲେଖା ଅଛି, ସମସ୍ତ ଦଣ୍ଡ କେବଳ ଶରୀର ଥିବା ମଣିଷକୁ ହିଁ ଦିଆଯାଇ ପାରିବ। ତେଣୁ ପ୍ରଶ୍ନ ଉଠୁଛି ମଣିଷ ମୃତ୍ୟୁପରେ ଏଇଠି ଛାଡି ଯାଇଥିବା ଶରୀର ତ ନଷ୍ଟ ହୋଇଯାଉଛି। ଯମପୁରରେ ଆଉ ଏକ ଶରୀର ଦଣ୍ଡ ଭୋଗ କରିବାପାଇଁ ଦିଆଯାଉଛି କି ? କିମ୍ବା ଯମଦୂତମାନେ ଶରୀର ସହିତ ମଣିଷକୁ ଉଠେଇ ନେଇ ଯାଉ ନାହାନ୍ତି କାହିଁକି ?

ଯମପୁରରେ ଯଦି ପୃଥିବୀ ଭଳି ସମସ୍ତ ଭୌତିକ ପଦାର୍ଥ ଯଥା : ଲୁହାରେ ତିଆରି ମାରଣାସ୍ତ୍ର, କଡେଇ, ତେଲ; ଅଗ୍ନି ଆଦି ରହିଛି, ତେବେ ସେଠାରେ ବାସ କରୁଥିବା ହିଂସ୍ର ଜନ୍ତୁ, ଯମଦୂତ ଆଦିଙ୍କ ପାଇଁ ଖାଦ୍ୟ ପଦାର୍ଥ ବି ରହୁଥିବ। ଅଯଥା ପିତୃପୁରୁଷଙ୍କୁ ଶ୍ରାଦ୍ଧ ନାମରେ, ପିଣ୍ଡଦାନ କରାଯାଉଛି କାହିଁକି ?

ଏହି ଅଧ୍ୟାୟରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ହେଉଛି - ମଣିଷ ଯେତେ ଯାହା ମନ୍ଦକର୍ମ କଲେ ବି, ଅପରାଧ ବୋଧ କରିବା ଆବଶ୍ୟକ ନାହିଁ। କାରଣ ସେ ମୃତ୍ୟୁ ଲାଭ କଲାପରେ, ତା'ର ସୁପୁତ୍ର (କାରଜ ପୁତ୍ର ନୁହେଁ) ଯଦି ବ୍ରାହ୍ମଣଙ୍କ ନିର୍ଦ୍ଦେଶରେ ବିଧି ପୂର୍ବକ ଶ୍ରାଦ୍ଧ, ପିଣ୍ଡଦାନ କରିବ ଏବଂ ବ୍ରାହ୍ମଣମାନଙ୍କୁ ଗୋଦାନ, ଭୂଦାନ, ସ୍ୱର୍ଣ୍ଣଦାନ, ଟଙ୍କାଦାନ ଆଦି କରିବ, ତେବେ ଯମପୁରରେ ତା'ର ସମସ୍ତ ପାପ କ୍ଷମା ହୋଇଯିବ। ମୃତ ପିତା (କେବଳ ଆତ୍ମା କିମ୍ବା ଶରୀର ସହିତ ଜଣା

ନାହିଁ) ନର୍କକୁ ନ ଯାଇ ବୈକୁଣ୍ଠପୁରକୁ ଯାତ୍ରା କରିବ। ଏଥିରେ କନ୍ୟା ଦ୍ୱାରା ପିଣ୍ଡଦାନ କରିବା ବିଧି ଲେଖାନାହିଁ।

ତୃତୀୟ ଅଧ୍ୟାୟରେ ପିଣ୍ଡାଧୀକାର ବୃତ୍ତାନ୍ତ ଚତୁର୍ଥ ଅଧ୍ୟାୟରେ "କର୍ମାନୟେ ଦଣ୍ଡ ବିଧାନ", ପଞ୍ଚମ ଅଧ୍ୟାୟରେ "ପାପୀର ଯମଦଣ୍ଡ ବର୍ଣ୍ଣନ", ଷଷ୍ଠ ଅଧ୍ୟାୟରେ ପାପ ଅନୁଯାୟୀ ରୋଗମାନଙ୍କ ଉତ୍ପତ୍ତି ବର୍ଣ୍ଣନ କରାଯାଇଛି। ସବୁଥିରେ ଏକା ଭଳି ଅସଂଗତ, ଅବିଶ୍ୱାସନୀୟ ତଥ୍ୟଗୁଡିକୁ ବୁଲେଇ ବଙ୍କେଇ ପୁନରାବୃତ୍ତି କରାଯାଇଛି।

ଯାହାର ସିଧା ଅର୍ଥ ହେଉଛି - ବଞ୍ଚିବାପାଇଁ ସୁଖ ସୁବିଧା ଅପେକ୍ଷା, ମୃତ୍ୟୁପର ଜୀବନପାଇଁ ବେଶି ଚିନ୍ତା କର। ସପ୍ତମ ଅଧ୍ୟାୟରେ "ଗର୍ଭରେ ଗର୍ଭବାସ ବର୍ଣ୍ଣନା" କରି ଲେଖକ କହିଛନ୍ତି, ମାଆ ପେଟରେ ରହୁଥିବା ଶିଶୁ ବି ନର୍କ ବାସ କରୁଥାଏ। ଦେଖନ୍ତୁ :-

ପିତା ବୀର୍ଯ୍ୟେ ସେ ସମୟେ ମାତାର ରଜରେ,
ହୁଅଇ ନାଶ ପତିତ ଯୋନିର ମଧ୍ୟରେ।
ଗମନ କରଇ ରଜ ବୀର୍ଯ୍ୟ ମିଳି ଧୀରେ,
ଯାଇ ପ୍ରବେଶଇ ମାତା ଗର୍ଭର ମଧ୍ୟରେ।
ଜୀବଥାଏ ତାହିଁ ପୂର୍ବ କର୍ମ ଅନୁସାରେ,
ଯନ୍ତ୍ରଣା ନରକ ପାଇଁ ଭୋଗ କରିବାରେ।
ମାତୃଗର୍ଭେ ତତ୍‌କ୍ଷଣେ ହୁଅନ୍ତି ପ୍ରବେଶ,
କରିବାପାଇଁ ଭୋଗ ନରକର କ୍ଲେଶ।
ମାତା ଜାଣ କେଉଁ କାଳେ ରଜବତୀ ହୁଏ,
ଦେହ ତାହାରଟି ପାପ ବୋଲି ଶାସ୍ତ୍ର କହେ।

ଏହି ତଥ୍ୟକୁ ଆମେ ଯୁକ୍ତିସଂଗତ ଭାବି ଗ୍ରହଣ କରିପାରିବା କି ? ଲେଖାଅଛି - ବୃତ୍ରାସୁରକୁ ବଧକରି, ଇନ୍ଦ୍ର ବ୍ରହ୍ମହତ୍ୟା ପାପ କରିଥିବାରୁ ସ୍ୱର୍ଗ ରାଜ୍ୟରେ ଶାସନ କରି ପାରିଲେ ନାହିଁ। ବ୍ରହ୍ମା ଇନ୍ଦ୍ରଙ୍କୁ ପାପ ମୁକ୍ତ କରିବାପାଇଁ ବ୍ରହ୍ମ ହତ୍ୟା ପାପକୁ ଛଅ ଭାଗ କରି ଦେଲେ। ପ୍ରତ୍ୟେକ ଭାଗକୁ କ୍ରମାନ୍ୱୟ ଭାବେ, ନାରୀର ଋତୁମତୀ ସମୟ, ବୃକ୍ଷ, ଅଗ୍ନି, ପୃଥିବୀ, ନଦୀ ଓ ବୈଶାଖ ମାସକୁ ବାଣ୍ଟି ଦେଲେ। ଇନ୍ଦ୍ର ପାପ ମୁକ୍ତ

ହୋଇ, ସ୍ୱର୍ଗରେ ରାଜା ହୋଇ ବସିଲେ। ଏହି କାହାଣୀରୁ କାହାକୁ କି ଭଳି ଶିକ୍ଷା ମିଳୁଛି ? ବୁଝି ହେଉନି।

ଅଷ୍ଟମ ଅଧ୍ୟାୟରେ "ବବ୍ରୁବାହନ କୃତ ପ୍ରେତ ସଂସ୍କାର, ନବମ ଅଧ୍ୟାୟରେ "ଆତୁରେ ଗୋଦାନାଦୀ ଫଳ" ଦଶମ ଅଧ୍ୟାୟରେ "ପାପ ଓ ପୂଣ୍ୟର ବିଚାର, ଏକାଦଶ ଅଧ୍ୟାୟରେ ଶବଦାହ ବିଧି ଓ ପ୍ରେତକର୍ମ, ଦ୍ୱାଦଶ ଅଧ୍ୟାୟରେ ଦଶ ଦିବସୀୟ ବିଧି ଓ ସନ୍ତାନହୀନର ପ୍ରେତ କୃତ୍ୟ ବର୍ଣ୍ଣନ, ତ୍ରୟୋଦଶ ଅଧ୍ୟାୟରେ ଏକାଦଶ ପିଣ୍ଡଦାନ ବିଧି, ଚତୁର୍ଦ୍ଦଶ ଅଧ୍ୟାୟରେ ଦ୍ୱାଦଶାହ ପିଣ୍ଡଦାନ ଓ ଶୌଚ, ଶୌଚ ବିଧାନ ବର୍ଣ୍ଣନ, ପଞ୍ଚଦଶ ଅଧ୍ୟାୟରେ ଯମପୁର ବୃତ୍ତାନ୍ତ, ଷୋଡଶ ଅଧ୍ୟାୟରେ "ଗୃହସ୍ଥର କର୍ତ୍ତବ୍ୟ ଓ ବୈକୁଣ୍ଠ ପ୍ରାପ୍ତିର ଉପାୟ, ସପ୍ତଦଶ ଅଧ୍ୟାୟରେ 'ବିରାଟ ପୁରୁଷ ରୂପ ବର୍ଣ୍ଣନ ତଥା ପିଣ୍ଡରୁ ପ୍ରାଣତ୍ୟାଗ ଏବଂ ଅଷ୍ଟାଦଶ ଅଧ୍ୟାୟରେ ମୋକ୍ଷ ଯୋଗ"ର ବର୍ଣ୍ଣନା କରଯାଇଛି।

ଉପରୋକ୍ତ ସମସ୍ତ ଅଧ୍ୟାୟରେ, ବର୍ଣ୍ଣନା କରାଯାଇଥିବା କାଳ୍ପନିକ ତଥା ଅବିଶ୍ୱାସନୀୟ ପ୍ରସଙ୍ଗଗୁଡିକର ମୂଳ ଉଦ୍ଦେଶ୍ୟ ହେଉଛି, ଧର୍ମ ବିଶ୍ୱାସୀ ଲୋକମାନଙ୍କୁ ମାନସିକ ସ୍ତରରେ ଆତଙ୍କିତ କରି ରଖିବା। ଆତଙ୍କିତ ମଣିଷ ମୃତ ବ୍ୟକ୍ତିଙ୍କ ପ୍ରେତାତ୍ମାକୁ ଶାନ୍ତ କରିବାପାଇଁ ଏବଂ ମୋକ୍ଷ (?) ପ୍ରାପ୍ତ କରେଇବାପାଇଁ ବ୍ରାହ୍ମଣମାନଙ୍କୁ ଯଥୋଚିତ ଦାନ ଦକ୍ଷିଣା ଦେବାକୁ ପଛ ଘୁଞ୍ଚା ଦିଏ ନାହିଁ।

ପଞ୍ଚଦଶ ଅଧ୍ୟାୟରେ ଯମପୁରର ଯେଉଁ ବର୍ଣ୍ଣନା ଅଛି, ତାହା ପୃଥିବୀର କୌଣସି ଏକ ମହାରାଜାଙ୍କ ରାଜଭବନଠାରୁ କମ୍ ନୁହେଁ। ଦେଖନ୍ତୁ :-

"ପୁର ଚାରି ପାରୁଶେ ଯେ ଚାରିଟି ଦୁଆର,
ପୂର୍ବ, ପଶ୍ଚିମ, ଦକ୍ଷିଣ ଆବର ଉତ୍ତର।
ପ୍ରାଚୀର ଦୀର୍ଘାକାର ଯେ ଘେରିଛି ସେ ପୁର,
ଯୋଜନ ସହସ୍ର ଯୁଣ ଅଟଇ ବିସ୍ତାର।
କାରୁକାର୍ଯ୍ୟ ବହୁତ ହିଁ ହୋଇଛି ନିର୍ମିତ,
ନୀଳା, ହୀରା, ମାଣିକ୍ୟରେ ଖମ୍ବ ଯେ ଶୋଭିତ।

ସୂର୍ଯ୍ୟ ସମ ବାଳ କାନ୍ତି ଅଟଇ ତାହାର,
ଅଟଇ ବିଚିତ୍ରପୁର ନିର୍ମାଣ ପ୍ରକାର।
ବିଜଡିତ ନବରତ୍ନ ତହିଁ ଏକ ପୁରେ,
ଆନନ୍ଦରେ ଚିତ୍ରଗୁପ୍ତ ତହିଁ ବାସ କରେ।"

ଅର୍ଥାତ୍ ଯମପୁରରେ ବାସ କରୁଥିବା ଯମ, ଚିତ୍ରଗୁପ୍ତ ଓ ଯମଦୂତମାନେ ଆରାମ ଦାୟକ ଜୀବନ ଅତିବାହିତ କରୁଛନ୍ତି। ଯମପୁରବାସୀ କେବେ ଓ କିପରି ଜାତ ହୋଇଛନ୍ତି ? ସେମାନେ ଅମର ନା ମରଣଶୀଳ ? ସେମାନେ ଅଶରୀର ନା ଶରୀରଧାରୀ ? ସେମାନେ ଅନ୍ନ, ଜଳ ଖାଆନ୍ତି କି ନାହିଁ ? ଏ ସବୁ ସଂପର୍କରେ କୌଣସି ଉଲ୍ଲେଖ ନାହିଁ। ଏପରିକି ବୈକୁଣ୍ଠ ଧାମର ଗଠନ ସଂପର୍କରେ ବି କୌଣସି ଉଲ୍ଲେଖ ନାହିଁ ।

ଷୋଡଶ ଅଧ୍ୟାୟରେ ଗୃହସ୍ଥର କର୍ତ୍ତବ୍ୟ ହେଉଛି - ବ୍ରହ୍ମଚର୍ଯ୍ୟ ପାଳନ କରିବା, ପୁତ୍ରପ୍ରାପ୍ତିପାଇଁ ହିଁ ସ୍ତ୍ରୀ ସହବାସ କରିବା, ବୈକୁଣ୍ଠ ପ୍ରାପ୍ତିକୁ ଧ୍ୟାନରେ ରଖି ସର୍ବଦା ପୂଜା, ପାଠ କରି ଦାନ, ଦକ୍ଷିଣା ଦେବା। ଗୃହସ୍ଥପାଇଁ ପାରିବାରିକ ଓ ସାମାଜିକ କର୍ତ୍ତବ୍ୟ କ'ଣ ହେବା ଉଚିତ ସେ ବିଷୟରେ ଚର୍ଚ୍ଚା ହୋଇନାହିଁ। ଏହି ଅଧ୍ୟାୟରେ ଗୋଟିଏ ଅବୈଜ୍ଞାନିକ ତଥ୍ୟ ବି ଲେଖା ଅଛି। ନାରୀ ରଜସ୍ୱଳା ହେବାର ପାଞ୍ଚ ଦିନଠାରୁ ହିଁ ଗର୍ଭବତୀ ହୋଇପାରେ। ଯୁଗ୍ମ ଦିନଗୁଡିକରେ ସଂଭୋଗ କଲେ, ପୁତ୍ର ହେବ ଏବଂ ଅଯୁଗ୍ମ ଦିନଗୁଡିକରେ କନ୍ୟା ଜନ୍ମ ହେବ। ଏହା ଏକ ଭ୍ରାମକ ତଥ୍ୟ।

ସପ୍ତଦଶ ଅଧ୍ୟାୟରେ ବର୍ଣ୍ଣିତ ବିରାଟ ପୁରୁଷ କେବେ, କେଉଁଠି ଜାତ ହୋଇଛି ଲେଖାନାହିଁ କିନ୍ତୁ ତାହାର ବିଭିନ୍ନ ଅଙ୍ଗରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ରହିଥିବା ଲେଖାଅଛି। ଯଥା :- ପାତାଳ, ବିତଳ, ସୁତଳ, ମହାତଳ ତଳାତଳ, ସରାତଳ, ସପତ ପାତାଳ, ଭୂଲୋକ, ଭୂବଲୋକ, ଜନଲୋକ, ତପଲୋକ, ସତ୍ୟଲୋକ, ସ୍ୱଲୋକ, ମହାଲୋକ ଇତ୍ୟାଦି।

ମେରୁ ପର୍ବତ, କୈଳାସ ପର୍ବତ, ହିମାଳୟ ପର୍ବତ, ଗନ୍ଧ ମାର୍ଦ୍ଦନ ପର୍ବତ ଓ ସପ୍ତକୁଳାଚଳ ପର୍ବତର ନାମ, ଯେଉଁଗୁଡିକ ଭାରତ ଓ ଆଖପାଖରେ ବିଦ୍ୟମାନ ଅଛି, କେବଳ ସେହିଗୁଡିକ ଉଲ୍ଲେଖ ଅଛି। ଆମେରିକା, ଋଷିଆ, ଜାପାନ, ଚୀନ ଆଦି ଦୂର ଦେଶର କୌଣସି ପର୍ବତର ନାମ ଉଲ୍ଲେଖ ନାହିଁ।

ସେହିଭଳି ଜମ୍ବୁଦ୍ୱୀପ, ଶାକଦ୍ୱୀପ, ଶାଲ୍ମଳୀ ଦ୍ୱୀପ, ପ୍ଲକ୍ଷଦ୍ୱୀପର ନାମ ଅଛି। ଆମ ଜ୍ଞାତରେ ଥିବା ଆଣ୍ଡାମାନ, ପୋର୍ଟ ବ୍ଲେୟାର, ଲାକ୍ଷାଦ୍ୱୀପ ସମୂହକୁ କେଉଁ ନାମ ଦିଆହୋଇଛି, ଆମେ ବୁଝି ପାରିନାହୁଁ। ଏଥିରେ ବର୍ଣ୍ଣିତ ସପ୍ତ ସାଗର ହେଉଛି ଲବଣ ସମୁଦ୍ର, କ୍ଷୀର ସାଗର, ଦଧିସିନ୍ଧୁ, ସୁରାସିନ୍ଧୁ, ଘୃତ ସାଗର ଓ ଇକ୍ଷୁ ସାଗର। (ସପ୍ତମ ସାଗରର ନାମ ନାହିଁ)। ନବଗ୍ରହଙ୍କ ନାମ ଉଲ୍ଲେଖ ଅଛି - ରବି, ସୋମ, ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଶନି, ରାହୁ ଓ କେତୁ।

**ସମାଜ ଉପରେ ଏହାର କୁପ୍ରଭାବ :-**

ଗରୁଡ ପୁରାଣରେ ଉଲ୍ଲେଖ କରାଯାଇଥିବା ତଥ୍ୟ, ପ୍ରସଙ୍ଗ, କାହାଣୀ, ଉପଦେଶ ଓ ନିର୍ଦ୍ଦେଶଗୁଡିକ ବିବାଦୀୟ ବିଷୟ। ସେ ଗୁଡିକ ବ୍ୟକ୍ତି ଓ ସମାଜ ଉପରେ କିଭଳି କୁପ୍ରଭାବ ପକାଇଛି, ତାହା ଅନୁଧ୍ୟାନ କଲେ ସାଧାରଣ ଜ୍ଞାନ ରଖୁଥିବା ଶିକ୍ଷିତ ଓ ଅଶିକ୍ଷିତ ଲୋକମାନଙ୍କ ଜ୍ଞାନ ଚକ୍ଷୁ ଖୋଲି ଯିବ, ଏଥିରେ ସନ୍ଦେହ ନାହିଁ।

ଆଜିର ଯୁଗରେ ଯୌଥ ପରିବାର ଭାଙ୍ଗି ଯାଇ ଛୋଟ ଛୋଟ ପରିବାର ଗଠନ ହେଉଛି। "ଯେତେ ଭାଇ ସେତେ ଘର" ନୀତିରେ, ଭାଇ ଭଉଣୀ ସିନା ଗୋଟିଏ ଘରୁ ଅଲଗା ହୋଇ ଯାଉଛନ୍ତି, କିନ୍ତୁ ସେମାନଙ୍କୁ ଜନ୍ମ କରି, ପାଳି ପୋଷି ବଡ କରିଥିବା ବୃଦ୍ଧ ପିତା, ମାତା ଜେଜେ-ବାପା, ଜେଜେ ମାଆ ଆଦି ଅସହାୟ, ଦୁର୍ବଳ ଓ ରୋଗଗ୍ରସ୍ତ ଅବସ୍ଥାରେ ବି ଦଣ୍ଡ ଭୋଗ କରୁଛନ୍ତି କାହିଁକି?

ଏଥିପାଇଁ ଅର୍ଥନୈତିକ ସମସ୍ୟା ଯେତିକି ଦାୟୀ ନୁହେଁ, ଭାବନାତ୍ମକ ସଂପର୍କ, ସଂବେଦନଶୀଳ ମନୋବୃତ୍ତି ଏବଂ ବିଶେଷ କରି ମାନବିକ ଦାୟିତ୍ୱବୋଧର ଅଭାବ ବେଶୀ ଦାୟୀ। ବଞ୍ଚିଥିବା ଅବସ୍ଥାରେ ଗୁରୁଜନମାନଙ୍କୁ ଅବହେଳା ତଥା ଉପେକ୍ଷା

କରିଥିବା ସନ୍ତାନ (ପୁତ୍ର)ମାନେ, ସେମାନଙ୍କ ମୃତ୍ୟୁପରେ ବଢେଇ ଚଢେଇ ଶ୍ରାଦ୍ଧ ତର୍ପଣ ଆଦି କରିଥା'ନ୍ତି। ଯିଏ ଯେତେ ଅଧିକ ଟଙ୍କା ଖର୍ଚ୍ଚ କରି ଶ୍ରାଦ୍ଧ କରିପାରିବ, ସେ ସେତିକି ସୁପୁତ୍ର ବା ପିତୃଭକ୍ତ ବୋଲି ସମାଜରେ ଖ୍ୟାତ ହେବ। ଅର୍ଥାତ୍ ସମାଜରେ ନିଜକୁ ଧାର୍ମିକ ତଥା ଦାନବୀର ବ୍ୟକ୍ତି ହିସାବରେ, ପ୍ରଚାର କରିବାର ମୌକା ମିଳିଯାଏ।

ଏହାର ବିପରୀତ ଆମ ମତରେ, ଏହାର ଅସଲ କାରଣ ହେଉଛି - ଜୀବିତାବସ୍ଥାରେ ଗୁରୁଜନଙ୍କ ପ୍ରତି କରିଥିବା ଦୁର୍ବ୍ୟବହାର ଯୋଗୁଁ ମାନସିକ ଗ୍ଲାନୀ ଥାଏ, ସେଇଥିପାଇଁ ସେମାନେ ଭୟ କରନ୍ତି, "କାଳେ ମୃତ ବ୍ୟକ୍ତିଙ୍କ ପ୍ରେତାତ୍ମା ପ୍ରତିଶୋଧ ନେବାପାଇଁ ଆମର ଅନିଷ୍ଟ କରିବେ।" ସେହି ଭୟରୁ ମୁକ୍ତି ପାଇବାପାଇଁ ଗରୁଡ ପୁରାଣର ନିର୍ଦ୍ଦେଶ କ୍ରମେ ବ୍ରାହ୍ମଣଙ୍କୁ ଦାନ, ଦକ୍ଷିଣା ଦେଇ ପିଣ୍ଡଦାନ କରି ଦେଲେ ପ୍ରେତାତ୍ମା ମୋକ୍ଷ ପାଇଯିବେ ଏବଂ ସେମାନେ ସୁରକ୍ଷିତ ଜୀବନ ଯାପନ କରି ପାରିବେ ବୋଲି ଦୃଢ ବିଶ୍ୱାସ କରନ୍ତି।

ଉପଯୁକ୍ତ ଚିକିତ୍ସା କରେଇ ଆରୋଗ୍ୟ ହେବାପାଇଁ ରୋଗୀ ଯେମିତି ଦୂର ଦୂରାନ୍ତରେ ଥିବା କୁଶଳ ଡାକ୍ତରଙ୍କ ପାଖକୁ ଯେତେ ଖର୍ଚ୍ଚ ହେଉ ପଛେ ଦୌଡି ଯାଆନ୍ତି। ଗଙ୍ଗାରେ ଅସ୍ଥି ବିସର୍ଜନ କରି ପିଣ୍ଡଦାନ କଲେ, ତୁରନ୍ତ ଏବଂ ନିଶ୍ଚିତ ପ୍ରେତାତ୍ମାକୁ ମୋକ୍ଷ ମିଳୁଥିବା, ପ୍ରତ୍ୟେକ ହିନ୍ଦୁମାନଙ୍କର ଏକ ସହଜ ବିଶ୍ୱାସ। ପୁରୀ, ତିରୁପତି, କାଶୀ, ବନାରସ ଆଦି ଅନେକ ତୀର୍ଥସ୍ଥଳ ଏଥିପାଇଁ ବିଖ୍ୟାତ। ଏଠାରେ ଶ୍ରାଦ୍ଧ, ମୁଣ୍ଡନ ଓ ପିଣ୍ଡଦାନ ନାମରେ, ଜଳ ପ୍ରଦୂଷଣ ହେବା ସହିତ କୋଟି କୋଟି ଟଙ୍କାର ବ୍ୟବସାୟ ବି ହେଉଛି। ଆର୍ଥିକ ସ୍ୱଚ୍ଛଳ ଥିବା ବ୍ୟକ୍ତିମାନେ, ଏହି କାମ କରିବାକୁ ନିଜର ସୌଭାଗ୍ୟ ମନେକରନ୍ତି।

ଏଥର ଦେଖିବା ଗରିବ ତଥା ନିର୍ଧନ ବ୍ୟକ୍ତିଙ୍କ ଦୂରାବସ୍ଥା। ଗରୁଡ ପୁରାଣ, ନବମ ଅଧ୍ୟାୟରେ ଉଲ୍ଲେଖ ଅଛି -

"ଦାନ ଦେବାପାଇଁ ଏହିପରି ଯେ ଅକ୍ଷମ
କହୁଅଛି ତେବେ ଶୁଣ ଉପାୟ ଯେ ଆନ।

ନାମ କୀର୍ତ୍ତନ ପ୍ରଭୁର କରି ବା କରାଇ,
କର୍ଣ୍ଣରେ ଶ୍ରବଣ କରି ମୁଖେ ବା ଗୁଣଇ ।
ଶୁଣି ଗୀତା ଭାଗବତ ଆଦି ବିପ୍ର ମୁଖ,
ସକଳ ପାପ ନାଶିବ ତରିଯିବ ଦୁଃଖ ।"

ଅର୍ଥାତ ଗରିବ ପୁତ୍ର ଦାନ ନ ଦେଇ ମଧ୍ୟ, ପିତାର ଆତ୍ମାର ସଦ୍‌ଗତି ପାଇଁ ଗୀତା, ଭାଗବତ ଆଦି ପଡିବା, ଶୁଣିବା ଯଥେଷ୍ଟ ହେବ । ବାସ୍ତବରେ ସେଭଳି ହେଉଛି କି ? ଆଦୌ ନୁହେଁ । ସମାଜ ସେହି ଗରିବ ବ୍ୟକ୍ତିଙ୍କୁ କୌଣସି ପ୍ରକାରେ ରିହାତି ଦେବାକୁ ରାଜି ହୁଏ ନାହିଁ । ବ୍ରାହ୍ମଣମାନେ ବି ଗରୁଡ ପୁରାଣର ମହତ ନିର୍ଦ୍ଦେଶକୁ ଲୁଚେଇ ରଖି ଦିଅନ୍ତି । ବିଚାରା ଗରିବଲୋକ, ସାହୁକାରଙ୍କଠାରୁ ଟଙ୍କା ଋଣ ଆଣି କିମ୍ବା ଘର ଚଳେଇବାପାଇଁ ରହିଥିବା ଚାଷ ଜମିରୁ କିଛି ବିକ୍ରିକରି, ଶ୍ରାଦ୍ଧ କରିବାକୁ ବାଧ୍ୟ ହୋଇଥାଏ ।

କେତେକ ଅତି ଗରିବ ଲୋକ, ଦ୍ୱାର ଦ୍ୱାର ବୁଲି ଭିକ ମାଗି, ଶବ ଦାହ କରୁଥିବା ଏବଂ ଶ୍ରାଦ୍ଧ କରୁଥିବା ଦୃଶ୍ୟ ଆମେ ଦେଖୁଛୁ । ଭିକ୍ଷାରୁ ପ୍ରାପ୍ତ ଧନରେ ଶ୍ରାଦ୍ଧ କରି ବ୍ରାହ୍ମଣଙ୍କୁ ଦାନ ନାମରେ ଭିକ୍ଷା ଦେବା, କେଉଁ ତର୍କରେ ନ୍ୟାୟ ସଙ୍ଗତ ବୋଲି ଆମେ କହିବା ? ପିତା, ମାତାଙ୍କୁ ହରେଇ ଅନାଥ ଅନୁଭବ କରୁଥିବା ଗରିବ ପୁତ୍ରପାଇଁ "ବୋଝ ଉପରେ ନଳିତା ବିଡା" ଭଳି ଅନ୍ୟାୟ ନୁହେଁ କି ?

ଯମପୁର, ନର୍କ, ପ୍ରେତାତ୍ମା ଆଦି କାଳ୍ପନିକ ମାୟା ଜଗତରୁ ମୁକ୍ତ ହୋଇ ଆମେ ଯଦି ବାସ୍ତବ ଜଗତକୁ ଫେରିବା, ତେବେ ଆମକୁ ନିଶ୍ଚିତ ଭାବେ ମାନସିକ ଶାନ୍ତି, ଶାରୀରିକ ସୁଖ, ସଂଭୋଗ ଏବଂ ଆର୍ଥିକ ଲାଭ ପ୍ରାପ୍ତ ହେବ ।

ଆଜି ଶରୀର ବିଜ୍ଞାନୀମାନେ ମାନବ ଶରୀରକୁ ସୁସ୍ଥ ରଖିବାପାଇଁ ବିଭିନ୍ନ ଗବେଷଣା କରୁଛନ୍ତି । ସେଥିପାଇଁ ଡାକ୍ତରଖାନା, ମେଡିକାଲ କଲେଜକୁ ଅନେକ ଶବ ଆବଶ୍ୟକ ପଡୁଛି । ଆମେ ଯଦି ଯେ କୌଣସି କାରଣରୁ ମୃତ୍ୟୁ ବରଣ କରିଥିବା ଶବକୁ, ନଷ୍ଟ ନ କରି ମେଡିକାଲ କଲେଜକୁ ଶରୀର ଦାନ କିମ୍ବା ଅଙ୍ଗ ଦାନ ପ୍ରକ୍ରିୟାରେ

ଦାନ କରିଦେବା, ତେବେ ତାଙ୍କ ଶରୀରର କିଛି ଅଙ୍ଗ ଅନ୍ୟ ରୋଗୀଙ୍କ ଶରୀରରେ ପ୍ରତ୍ୟାରୋପଣ କରି ହେବ ଏବଂ ତାଙ୍କୁ ନୂଆ ଜୀବନ ପ୍ରାପ୍ତ ହେବ। ସାଧାରଣ ଶବ ଡାକ୍ତରୀ ଛାତ୍ରଛାତ୍ରୀଙ୍କ ଶିକ୍ଷାରେ ସାହାଯ୍ୟ କରିବ। ଏହା ହେବ ଏକ ସର୍ବୋତ୍ତମ ମାନବୀୟ ଧର୍ମ।

କିଛି ଲୋକ ଏହାର ପ୍ରତିବାଦ କରି କହନ୍ତି - "ଏହି ଜନ୍ମରେ ଅଙ୍ଗ ଦାନ କରି ଦେଲେ, ଆସନ୍ତା ଜନ୍ମରେ ଅପଙ୍ଗ ହୋଇ ଜନ୍ମ ହେବ।" ଏହା ସମ୍ପୂର୍ଣ୍ଣ ଭିତ୍ତିହୀନ ଓ ଅବୈଜ୍ଞାନିକ ବିଚାର। ବିଭିନ୍ନ ଧର୍ମ ଶାସ୍ତ୍ର ବି ଅଙ୍ଗଦାନକୁ ସମର୍ଥନ କରୁଛନ୍ତି। ଆମର ଚିନ୍ତା କରିବା ଉଚିତ୍ ଯେ ଜୀବିତାବସ୍ଥାରେ ଦାନ ଯଦି ପାର୍ଥିବ ଶରୀରକୁ ମୋକ୍ଷ ବାଟ ଦେଖାଇ ପାରୁଛି, ମୃତ୍ୟୁପରେ ଜୀବକୁ ପରଲୋକରେ ସ୍ଥାନ ଦେଇ ପାରୁଛି ତେବେ ମୃତ୍ୟୁପରେ, ଜଡ ଶରୀରକୁ ଦାନ ନ କରିବା କାହିଁକି ?

ପୁରାଣରେ ଉଲ୍ଲେଖ ଅଛି - ବ୍ୟତାସୁରକୁ ନିଧନ କରିବାପାଇଁ ମହର୍ଷି ଦଧୀଚି ଶରୀରରୁ ଅସ୍ଥି ଦାନ କରିଥିଲେ। ବିଦ୍ୟାଦାତା ଗଣେଶଙ୍କ ମସ୍ତକ ସ୍ଥାନରେ ଗଜମୁଣ୍ଡ ଲଗା ଯାଇଥିଲା। ତେଣୁ କୌଣସି ଅଙ୍ଗ କାହା ଉପରେ କୁପ୍ରଭାବ ପକାଇବ, ଏହା ଭାବିବା ଭୁଲ।

କୌଣସି ଧର୍ମ କେଉଁଠି ବି ଅଙ୍ଗ ଦାନକୁ ବାଧା ଦେବାକୁ ପ୍ରୟାସ କରି ନାହିଁ। ମାନବ ସେବାକୁ ମାଧବ ସେବା ବୋଲି ଯେଉଁମାନେ ବିଶ୍ୱାସ କରୁଛନ୍ତି, ସେମାନେ ଶରୀର ଦାନ ପାଇଁ ଉଦାର ମନରେ ଆଗେଇ ଆସିବା ଉଚିତ୍। ଧନ ଦାନକୁ ଶାସ୍ତ୍ରରେ ମହାପୂଣ୍ୟ ବୋଲି କୁହାଯାଇଥିବା ବେଳେ, ଅଙ୍ଗ ଦାନ ଦ୍ୱାରା ଆଉ ଜଣଙ୍କୁ ଜୀବନ ଦାନ ଦେବାଠାରୁ ବଳି ପୁଣ୍ୟ କିଛି ଥାଇ ନ ପାରେ। ଅର୍ଥାତ୍ ଅଙ୍ଗ ଦାନ ମହାଦାନ।

*******

# ଅହେତୁବାଦୀ ବିଶ୍ୱାସ

ଭାରତ ଏକ ହିନ୍ଦୁବହୁଳରାଷ୍ଟ୍ର । ଏହି ଦେଶର ପ୍ରତ୍ୟେକ ରାଜ୍ୟରେ ହିନ୍ଦୁଧର୍ମକୁ ବିଶ୍ୱାସ କରୁଥିବା ଅଧିକାଂଶ ଲୋକବାସ କରୁଛନ୍ତି । ହିନ୍ଦୁଧର୍ମର ଏକ ନୁହେଁ ଅନେକ ମାନ୍ୟତା ପ୍ରାପ୍ତ ଧର୍ମଗ୍ରନ୍ଥ ରହିଛି । ପ୍ରତ୍ୟେକ ଧ୍ରମଗ୍ରନ୍ଥକୁ ଏକ ବିଶିଷ୍ଟ ଓ ଶେଷ୍ଠ ଧର୍ମଗ୍ରନ୍ଥ ବୋଲି ମାନୁଥିବା କିଛି ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ବର୍ଗ ରହିଛନ୍ତି । ପ୍ରତ୍ୟେକ ଗ୍ରନ୍ଥରେ ଏକ ବା ଏକାଧିକ ଦେବୀ, ଦେବତାଙ୍କ ମହାନତାକୁ ବିଭିନ୍ନ ଉପାଖ୍ୟାନ, କାହାଣୀ, କିମ୍ବଦନ୍ତୀ ଓ ଚମତ୍କାରୀ ଉପମା ଦେଇ ବର୍ଣ୍ଣନା କରଯାଇଛି । ଯଦିଓ କୁହାଯାଏ ଯେ ହିନ୍ଦୁଧର୍ମରେ ତେତିଶକୋଟି ଦେବୀ, ଦେବତା ଅଛନ୍ତି କିନ୍ତୁ ସେମାନଙ୍କପାଇଁ ତେତିଶକୋଟି ଗ୍ରନ୍ଥ ହୁଏତ ଲେଖାଯାଇ ନାହିଁ । ବିଭିନ୍ନ ଗ୍ରନ୍ଥରେ ତେତିଶକୋଟି ଦେବୀ, ଦେବତା ଅଛନ୍ତି କିନ୍ତୁ ସେମାନଙ୍କପାଇଁ ତେତିଶକୋଟି ଦେବୀ, ଦେବତାଙ୍କ ନାମ ଉଲ୍ଲେଖ ଅଛି କି ନାହିଁ ସଂଦେହ । ତଥାପି ପ୍ରକାଶ୍ୟଭାବେ ଭାରତର ଗୋଟିଏ କୋଣରୁ ଅନ୍ୟ କୋଣ ପର୍ଯ୍ୟନ୍ତ ଯେତିକି ଦେବୀ, ଦେବତା ପୂଜା ପାଉଛନ୍ତି, ସେମାନଙ୍କର ସଠିକ ସଂଖ୍ୟା ଗଣନା କରିବା ବି ସଂଭବ ନୁହେଁ । ଏଠାରେ ଆମେ ସଂଖ୍ୟା ଉପରେ ଚର୍ଚ୍ଚା କରିବା ଅନାବଶ୍ୟକ । ଅସଲ ଏବଂ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି - ଯେଉଁ ଦେବୀ ଦେବତାଙ୍କ ନାମରେ ବିଭିନ୍ନ ପୂଜା ବା କର୍ମକାଣ୍ଡ ନିର୍ଦ୍ଧାରିତ ହୋଇଛି, ସେଗୁଡିକ ମଣିଷର ଚଳନ୍ତି ଜୀବନରେ ସୁଖ ସାଧନ ପାଇଁ କେତେ ଉପଯୋଗୀ ? ସତରେ କ'ଣ ଦେବୀ, ଦେବତାଙ୍କୁ ପୂଜା ଅର୍ଚ୍ଚନା କରି, ପୂଜାରୀ ଓ ଧର୍ମଗୁରୁମାନଙ୍କୁ ଦାନ, ଦକ୍ଷିଣା ଦେଇ ମଣିଷ ନିଜର ଇପ୍‌ସିତ ଶାନ୍ତି ଓ ସୁଖ ପ୍ରାପ୍ତ କରି ପାରୁଛି ?

ଏହି ଦୁଇଟି ପ୍ରଶ୍ନର ଉତ୍ତର ଦେଇ ପ୍ରତ୍ୟେକ ଶ୍ରଦ୍ଧାଳୁ କୁହନ୍ତି ନିଶ୍ଚୟ ଉପଯୋଗୀ ଏବଂ ସୁଖ, ଶାନ୍ତି ପାଇବେ କିନ୍ତୁ ଗୋଟିଏ ସର୍ତ୍ତ ରହିଛି । ତାହା ହେଉଛି ଇଶ୍ୱରଙ୍କ ଉପରେ ଗଭୀର ଆସ୍ଥା ରଖି ନିଷ୍ଠାପର ଭାବେ କୁଚ୍ଛ୍ର ସାଧନା କରିବାକୁ ହେବ ।

ଦୁଃଖର କଥା ଯେ ଆମେ ଦେଖୁଛୁ, ଇଶ୍ୱରଙ୍କ କୃପା ପ୍ରାପ୍ତ କରିବାପାଇଁ

ଯେଉଁ କଠିନ ସର୍ତ୍ତଟି ରହିଛି, ସେହି ସର୍ତ୍ତରେ ସମସ୍ତେ ହାରି ଯାଉଛନ୍ତି । ମଜା କଥା ହେଉଛି ଯେ ହାରିଯାଇଥିବା ଭକ୍ତ କେବେ ବି ଏହା ସ୍ୱୀକାର କରେ ନାହିଁ, ବରଂ ସେ ମନକୁ ସାନ୍ତ୍ୱନା ଦେବାପାଇଁ କହେ - ଏହି ଜନ୍ମରେ ସୁଖଶାନ୍ତି ନ ପାଇଲେ କ'ଣ ହେଲା, ଆସନ୍ତା ଜନ୍ମରେ ନିଶ୍ଚୟ ସୁଫଳ ପାଇବି ।

ଆମେ ଦେଖୁଛୁ - ଚଳନ୍ତି ଜୀବନରେ ପ୍ରତ୍ୟେକ ନାରୀ ଓ ପୁରୁଷ ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ସମସ୍ୟା ସହିତ ସଂଘର୍ଷ କରି ଅସହାୟ ବୋଧ କଲେ, ସେ ସର୍ବଶକ୍ତିମାନ ଓ ଦୟାଳୁ ଈଶ୍ୱରଙ୍କ ଉପରେ ଗଭୀର ଶ୍ରଦ୍ଧା ଓ ବିଶ୍ୱାସ ରଖି ନିଷ୍ଠାପର ଭାବେ ସାଧନା କରୁଥିବା ସତ୍ତ୍ୱେ ବାଞ୍ଛିତ ସଫଳତା ପାଉନାହାଁନ୍ତି । କାହିଁକି ପାଉନାହାଁନ୍ତି ? ଏହାର ଉତ୍ତର ତର୍କସଂଗତ ଭାବେ କେହି ଦେଉ ନାହାଁନ୍ତି ।

ଏହି ମୌଳିକ ପ୍ରଶ୍ନର ଉତ୍ତର ଖୋଜିବାପାଇଁ ଆମେ ଅନେକ ଛୋଟ, ବଡ ପୁରାଣଶାସ୍ତ୍ର ଅଧ୍ୟୟନ କରିଛୁ । ସେଗୁଡିକରେ ବର୍ଣ୍ଣିତ ଉପାଖ୍ୟାନ, କାହାଣୀ, ପ୍ରସଂଗ, କିମ୍ବଦନ୍ତୀ ଆଦିରେ ଅନେକ ଅସଂଗତ, ଅବୈଜ୍ଞାନିକ, ପରସ୍ପର ବିରୋଧାଭାସ ଦେଖିବାକୁ ମିଳୁଛି । ତଥାପି ସେହିଭଳି ଉପାଖ୍ୟାନ ଓ କାହାଣୀକୁ ନିଜର ଅନ୍ଧଶ୍ରଦ୍ଧା ଯୋଗୁଁ ସତ୍ୟ ବୋଲି ଯେଉଁମାନେ ମାନୁଛନ୍ତି, ସେମାନେ ପୂଜା ଅର୍ଚ୍ଚନା କରି ବିଫଳ ହେବାର ଅସଲ କାରଣ ହେଉଛି ଭିତ୍ତିହୀନ ବିଶ୍ୱାସ ଓ ବୈଜ୍ଞାନିକ ଚିନ୍ତନର ଅଭାବ ।

ଏଠାରେ ଆମେ ଓଡିଶାର ପୁରପଲ୍ଲୀରେ ପ୍ରଚଳିତ କିଛି ପୁରାଣରେ ଦେବୀଦେବତାଙ୍କ ସଂପର୍କରେ ବର୍ଣ୍ଣନା କରାଯାଇଥିବା ଉପାଖ୍ୟାନ, କାହାଣୀ, କିମ୍ବଦନ୍ତୀ ଓ ପୂଜା ପଦ୍ଧତି ଉପରେ ଆମର ଆଲୋଚନାକୁ ସୀମିତ ରଖିବା କାରଣ ଲେଖାଟି ଅତି ଦୀର୍ଘ ହୋଇଗଲେ ହୁଏତ ପାଠକମାନଙ୍କ ଧୈର୍ଯ୍ୟଚ୍ୟୁତ ଘଟିବ । ଶିବପୁରାଣ ଅନୁସାରେ - ଦକ୍ଷ ପ୍ରଜାପତି, ଯଜ୍ଞସ୍ଥଳରେ ପାର୍ବତୀଙ୍କୁ ଅପମାନିତ କରିଥିଲେ । ପାର୍ବତୀ ଏହା ସହି ନପାରି ଯଜ୍ଞକୁଣ୍ଡରେ ଆତ୍ମବିସର୍ଜନ କଲେ । ଶିବ ଏହା ଜାଣିପାରି ଅତ୍ୟନ୍ତ କ୍ରୋଧ ପ୍ରକଟ କଲେ । ସେ ଯଜ୍ଞସ୍ଥଳକୁ ଯାଇ ଯଜ୍ଞ କୁଣ୍ଡକୁ ଧ୍ୱଂସ କରିବା ସହିତ ପାର୍ବତୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ ଟାଣି ଆଣି କାନ୍ଧରେ ଧରି ଭୀଷଣ ତାଣ୍ଡବ

ନୃତ୍ୟ କରି ବିଶ୍ୱ ବ୍ରାହ୍ମାଣ୍ଡରେ ଘୁରି ବୁଲିଲେ । ଶିବଙ୍କ କ୍ରୋଧ ଦେଖି ଦେବଗଣ ଭୟ ପାଇ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ବିଷ୍ଣୁ ନିଜର ସୁଦର୍ଶନ ଚକ୍ରରେ ଦେବୀଙ୍କ ଶରୀରକୁ ଖଣ୍ଡଖଣ୍ଡ କରି ପକାଇଲେ । ଏହା ଆଠଖଣ୍ଡ ହୋଇ ଓଡ଼ିଶାର ଆଠଗୋଟି ଜାଗାରେ ପଡ଼ିଲା । ସେହିଗୁଡ଼ିକ ଶକ୍ତିପୀଠ ନାମରେ ସ୍ଥାପିତ ଓ ବିଖ୍ୟାତ । ସେହିଗୁଡ଼ିକ ହେଲା "ବାଣପୁରରେ ଭଗବତୀ, ଜାଜପୁରରେ ମଙ୍ଗଳା, ଝଙ୍କଡରେ ଶାରଳା, ପୁରୀରେ ବିମଳା, ଯାଯପୁରରେ ବିରଜା, ବାଙ୍କୀରେ ଚର୍ଚ୍ଚିକା, ତାଳଚେରରେ ହିଙ୍ଗୁଳା ଓ ସମ୍ବଲପୁରରେ ସମଲେଇ ।" ପ୍ରତିଦିନ ଅସଂଖ୍ୟ ନରନାରୀ ନିଜର ମନୋବାଞ୍ଛା ପୂରଣ ହେବାପାଇଁ ସେହି ଶକ୍ତିପୀଠମାନଙ୍କରେ ବିଧି ମୁତାବକ ପୂଜା ଓ କର୍ମକାଣ୍ଡ କରୁଛନ୍ତି । ଏଇଠି ଆମେ ଗୋଟିଏ କଥା ସ୍ପଷ୍ଟ କରିଦେବାକୁ ଚାହୁଁଛୁ ଯେ ଯିଏ ଯେମିତି ବିଶ୍ୱାସ କରୁଛନ୍ତି, ସେ ସେମିତି ପୂଜା କରୁଛନ୍ତି । ଏହା ସେମାନଙ୍କ ନିହାତି ବ୍ୟକ୍ତିଗତ ବ୍ୟାପାର । ଆମର ସେଥିରେ ଆପତ୍ତି ନାହିଁ । କିନ୍ତୁ ଧର୍ମ ନାମରେ ନିଜର ଭିତ୍ତିହୀନ ବିଶ୍ୱାସକୁ ଅନ୍ୟମାନଙ୍କ ଉପରେ ଥୋଇ, ଶୋଷଣ କରୁଥିବା ବ୍ୟକ୍ତିଙ୍କ ସଂପର୍କରେ ଆମ ସହିତ ପ୍ରତ୍ୟେକ ସଚେତନବ୍ୟକ୍ତି ଆପତ୍ତି କରିବା ଉଚିତ ।

ଶିବ ପୁରାଣର ଉପାଖ୍ୟାନକୁ ନେଇ ଆମ ମନରେ କେତେକ କୌତୁହଳ ଯୁକ୍ତ ପ୍ରଶ୍ନ ଉଠୁଛି । (୧) ଶିବ ଯେତେବେଳେ ପାର୍ବତୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ ନେଇ ବ୍ରାହ୍ମଣ୍ଡ ସାରା ବୁଲିବୁଲି ତାଣ୍ଡବ ନୃତ୍ୟ କରୁଥିଲେ ଏବଂ ବିଷ୍ଣୁ ସୁଦର୍ଶନ ଚକ୍ରରେ କାଟି ଶରୀରକୁ ଆଠଖଣ୍ଡ କରିଦେଲେ, ସେତେବେଳେ ସେଥିରୁ ଖଣ୍ଡେ ଆମେରିକାରେ, ଖଣ୍ଡେ ଆଫ୍ରିକା ଜଙ୍ଗଲରେ, ଖଣ୍ଡେ ପ୍ରଶାନ୍ତ ମହାସାଗରରେ କିମ୍ବା ଭାରତର ଅନ୍ୟ କୌଣସି ରାଜ୍ୟରେ ପଡ଼ିଲାନି କାହିଁକି ? ସମସ୍ତ ଆଠଖଣ୍ଡ କେବଳ ଓଡ଼ିଶାରେ ହିଁ କାହିଁକି ପଡ଼ିଲା ? (୨) ଦକ୍ଷ ପ୍ରଜାପତିଙ୍କ ଯଜ୍ଞସ୍ଥଳ ଓଡ଼ିଶାର କେଉଁଠି ଥିଲା କି ? (୩) ଶିବ ବ୍ରହ୍ମାଣ୍ଡସାରା ନ ବୁଲି, କେବଳ ଓଡ଼ିଶା ଭୂମିରେ ତାଣ୍ଡବ ନୃତ୍ୟ କରୁଥିଲେ କି ?

(୪) ଦେବୀ ପାର୍ବତୀ ତ ଶକ୍ତିର ପ୍ରତୀକ । ତାଙ୍କ ବିଷୟରେ ବିଭିନ୍ନ ପୁରାଣରେ ବିଭିନ୍ନ ନାମ, ଚରିତ୍ର ଓ ଶକ୍ତିଥିବା କଥା ବର୍ଣ୍ଣନା କରାଯାଇଛି କାହିଁକି ?

(୫) ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଠାରୁ ବି ମହାନ୍ ଆଦିମାତାଙ୍କ ଶକ୍ତି ଓ ମହାନତା ଦର୍ଶାଇବାପାଇଁ ଯେଉଁ ଭିନ୍ନଭିନ୍ନ ଅବତାରଗୁଡିକ ଅବତାର କରାଯାଇଛି, ସେଗୁଡିକରେ ଅନେକ ବିରୋଧାଭାସ ରହିଛି କାହିଁକି ? ସେ କେଉଁଠି ସଂପୂର୍ଣ୍ଣ ନିରାମିଷ ଭୋଗ ଗ୍ରହଣ କରୁଛନ୍ତି, କେଉଁଠି ପଶୁବଳି ଦେଇ ଆମିଷ ଭୋଗ ଦିଆଯାଉଛି । କେଉଁଠି ଶାନ୍ତ ସୌମ୍ୟ ନାରୀ ସୁଲଭ ଗୁଣରେ ସୁଶୋଭିତା । କେଉଁଠି ରକ୍ତଜିହ୍ୱା, ଖପୁରୀ ମାଳା ପିନ୍ଧି ଅର୍ଦ୍ଧନଗ୍ନ ହୋଇ ଅଛନ୍ତି । ସେ କେଉଁଠି ନିଜର ସହଚାରୀମାନଙ୍କର କ୍ଷୁଧା ନିବାରଣପାଇଁ ମସ୍ତକ କାଟି ରକ୍ତ ପିଆଇଛନ୍ତି । (ଛିନ୍ନମସ୍ତା ଦେବୀଙ୍କ ପୁରାଣବର୍ଣ୍ଣିତ କାହାଣୀ)

(୬) ରାମାୟଣର କାହାଣୀ ଅନୁସାରେ ଦେବୀ ପ୍ରଥମେ ରାବଣର ତପସ୍ୟାରେ ଖୁସି ହୋଇ ରାବଣ ସପକ୍ଷରେ ଥିଲେ । ସେଥିପାଇଁ ରାମ ଯୁଦ୍ଧରେ ଜିତିପାରୁ ନଥିଲେ । ରାମ ଏହା ଜାଣିପାରି ଦେବୀଙ୍କୁ ଆରାଧନା କରିବାରୁ ଦେବୀ ରାବଣକୁ ତ୍ୟାଗକରି (ଧୋକାଦେଇ) ରାମଙ୍କୁ ସାହାଯ୍ୟ କଲେ । ଦେବୀ କ'ଣ ପ୍ରଥମେ ଜାଣି ନଥିଲେ କି ରାବଣ ଏକ ଦୁଷ୍ଟ ଅସୁର, ତାକୁ ସାହାଯ୍ୟ କରିବା ଉଚିତ ନୁହେଁ ?

(୭) ଦେବୀ ବିଭିନ୍ନ ସମୟରେ ଦେବତାମାନଙ୍କୁ ରକ୍ଷା କରିବାପାଇଁ ବିଭିନ୍ନ ବେଶରେ ଅସୁରମାନଙ୍କ ସହ ଯୁଦ୍ଧକରି ନିଧନ କରିଦେଇଛନ୍ତି । ସେତେବେଳେ କ'ଣ ଦେବତାମାନେ ଶକ୍ତି ରହିତ ଥିଲେ ?

(୮) ବ୍ରହ୍ମା ଓ ଶିବ ବିଭିନ୍ନ ସମୟରେ ଅନେକ ମନ୍ଦ ଉଦ୍ଦେଶ୍ୟ ରଖି ଶକ୍ତି ପ୍ରାପ୍ତ କରିବାପାଇଁ ତପସ୍ୟା କରୁଥିବା ଅସୁରମାନଙ୍କୁ ବିନା ଭାବିଚିନ୍ତି ବର ପ୍ରଦାନ କରିଦେଉଥିଲେ । ପରେ ଭୁଲ ବୁଝିପାରି ଦେବୀଙ୍କ ଶରଣାପନ୍ନ ହେଉଥିଲେ । ବ୍ରହ୍ମା ଓ ଶିବ କ'ଣ ଏତେ ବୋକା ଥିଲେ ଯେ ଅସୁରମାନଙ୍କୁ ଚିହ୍ନି ପାରୁନଥିଲେ ?

(୯) ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏବଂ ନିଜେ ଆଦିମାତା ଯଦି ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଥିଲେ, ତେବେ ସେମାନେ ଅସୁର ଜାତୀୟ ଜୀବମାନଙ୍କୁ ସୃଷ୍ଟି କରୁଥିଲେ କାହିଁକି ?

ପ୍ରଥମରୁ ହିଁ ବ୍ରହ୍ମାଣ୍ଡରେ ଶାନ୍ତ, ସରଳ, ସଭ୍ୟ ମଣିଷକୁ ସୃଷ୍ଟି କରିଥିଲେ, ପଛରେ ଏତେ ହିଂସା, ହତ୍ୟା, ରକ୍ତପାତ କରିବା ଆବଶ୍ୟକ ପଡନ୍ତା ନାହିଁ ।

(୧୦) ଆଉ ଏକ ପ୍ରଶ୍ନ ଉଠୁଛି - ଅସୁର ଜାତୀୟ ଜୀବମାନଙ୍କୁ ସୃଷ୍ଟି କରିବାପାଇଁ ଅନ୍ୟ କେହି ସୃଷ୍ଟି କର୍ତ୍ତା ବ୍ରହ୍ମାଣ୍ଡରେ ବିଦ୍ୟମାନ ଅଛି କି ?

(୧୧) ଦକ୍ଷ ପ୍ରଜାପତିଙ୍କ ସ୍ତ୍ରୀ ତଥା ଶିବଙ୍କ ଶାଶୁ ଚନ୍ଦ୍ରକାନ୍ତି ନିଜ ଯାମାତାଙ୍କ ଦ୍ୱାରା ଲିଂଗ ପ୍ରଦର୍ଶନରେ କ୍ଷୁବ୍ଧ ହୋଇ ଅଭିଶାପ ଦେଲେ ଯେ କଳି ଯୁଗରେ ତୁମେ ଲିଂଗ ରୂପରେ ପୂଜା ପାଇବ । ଏହା ଶିବଙ୍କୁ ଅଭିଶାପ ନା ବରଦାନ ଥିଲା ? ଶିବଙ୍କର କ'ଣ କ୍ଷତି ହେଲା ? ଆବାହମାନ କାଳରୁ ଲୋକମାନେ ଶିବଲିଙ୍ଗକୁ ନିର୍ଲ୍ଲଜ ଭାବେ ପୂଜା କରି ଆସୁଛନ୍ତି । ଶିବଙ୍କୁ ଚନ୍ଦ୍ରକାନ୍ତି କାହିଁକି କହିଲେ ନାହିଁ - ତୁମର ଲିଙ୍ଗ ଆଜିଠାରୁ ନଷ୍ଟ ହୋଇଯାଉ କିମ୍ବା ତୁମେ ଆଜିଠାରୁ ନପୁସଂକ ହୋଇଯାଅ ?

(୧୨) ଆଜିର ମାନବ ସମାଜରେ ଦୁଷ୍ଟଲୋକମାନଙ୍କ ଦ୍ୱାରା ଅନ୍ୟାୟ, ଅତ୍ୟାଚାର, ଶୋଷଣ ଓ ହତ୍ୟା ଆଦି ହେଉଛି । ପୂର୍ବକାଳରେ ବି ସେୟା ହେଉଥିବାରୁ ଶିବ ଓ ପାର୍ବତୀ ବିଭିନ୍ନ ରୂପ ଧାରଣ କରି ଦୁଷ୍ଟ ଲୋକମାନଙ୍କୁ ନିଧନ କରିଦେଉଥିଲେ । ଆଜି ସେମାନେ କାହିଁକି ପୃଥିବୀକୁ ଆସି ସେମିତି କରୁ ନାହାଁନ୍ତି ?

(୧୩) ଆଶୁତୋଷ ଶିବଙ୍କୁ ଅଜ୍ଞାତରେ ବି ଯଦି କେହି ସ୍ମରଣ କରିଦିଏ କିମ୍ବା ଅଜ୍ଞାତରେ ତାଙ୍କ ଲିଂଗ ଉପରେ କେହି ବେଲପତ୍ର ଚଢେଇ ଦିଏ, ସେ ସନ୍ତୁଷ୍ଟ ହୋଇ ତା'ର ସମସ୍ତ ପାପକୁ କ୍ଷମା କରିଦେଉଥିବା କାହାଣୀ ଲେଖାଅଛି । ପ୍ରଶ୍ନ ଉଠୁଛି - ଆଜି ହଜାର ହଜାର ଭକ୍ତ ଅଜ୍ଞାତରେ ନୁହେଁ, ସଂପୂର୍ଣ୍ଣନିଷ୍ଠା, ଭକ୍ତି ଓ ବିଶ୍ୱାସରେ ଶିବଲିଙ୍ଗ ଉପରେ ଲକ୍ଷ ଲକ୍ଷ ବେଲପତ୍ର, କ୍ୱିଣ୍ଟାଲ, କ୍ୱିଣ୍ଟାଲ ଦୁଧ ଆଦି ଅର୍ପଣ କରି ମଧ୍ୟ ମଣିଷର ଦୁଃଖ ଯାଉନି କାହିଁକି ?

(୧୪) ଶିବଙ୍କୁ ଗୋଟିଏ ପୁରାଣରେ ଅତି କାମୁକ ଦେବତା ଏବଂ ଅନ୍ୟ ଏକ ପୁରାଣରେ ସେ ଭୋଗୀ ନଥିଲେ, ଯୋଗୀଥିଲେ ବୋଲି ବର୍ଣ୍ଣନା କରାଯାଇଛି । ପ୍ରଶ୍ନ ଉଠୁଛି - କେଉଁଟି ସତ୍ୟ ?

(୧୫) ପୃଥିବୀର ଅନ୍ୟ ଦୁଇଟି ଧର୍ମ ଭଳି ହିନ୍ଦୁ ଧର୍ମର ପ୍ରକୃତରେ ଶ୍ରେଷ୍ଠ ଦେବତା କିଏ, କେହି ଠିକ୍ କରି ପାରିନାହାନ୍ତି । ବିଭିନ୍ନ ସମୟରେ ବିଭିନ୍ନ ଦେବତାଙ୍କୁ ଶ୍ରେଷ୍ଠ ବୋଲି ଅନ୍ୟ ସମସ୍ତ ଦେବତା ପୂଜା କରୁଥିବା ଉଦାହରଣ ପୁରାଣ ମାନଙ୍କରେ ଦେଖିବାକୁ ମିଳୁଛି । ଏକ ସମୟରେ ଶିବ ଶ୍ରେଷ୍ଠ, ଅନ୍ୟ ଏକ ସମୟରେ ତାଙ୍କ ପୁତ୍ର ଗଣେଶ ଶ୍ରେଷ୍ଠ ବୋଲି କୁହାଯାଏ । ଏହା କିପରି ସଂଭବ ?

(୧୬) ମଜାକଥା ହେଉଛି ଯେ କୌଣସି ଦେବତା ଯୁଦ୍ଧ ରୂପକ ହିଂସା ନକରି ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିପାରିନାହାନ୍ତି । ସେମାନଙ୍କର ଅଲୌକିକ ଦେବୀଶକ୍ତି ବଳରେ ଅସୁର କିମ୍ବା ଦୁଷ୍ଟ ପ୍ରକୃତିର ଲୋକମାନଙ୍କ ମାନସିକ ପରିବର୍ତ୍ତନ କରିପାରୁ ନଥିଲେ କାହିଁକି ? ପ୍ରଶ୍ନ ଉଠୁଛି - ସେହି ଯୁଦ୍ଧପ୍ରିୟ ଦେବତାଙ୍କୁ ପୂଜା କରି ମଣିଷ ଅହିଂସା ଗୁଣ କିପରି ପ୍ରାପ୍ତ କରିବ ? ଅହିଂସା ଗୁଣ ପ୍ରାପ୍ତ କଲେ ଅବା ମଣିଷର କି ଲାଭ ହେବ ? ଦୁଷ୍ଟମାନଙ୍କୁ ନଷ୍ଟ କରିବାପାଇଁ ହିଂସା ଓ ଯୁଦ୍ଧ ତ କରିବାକୁ ହିଁ ପଡ଼ିବ ।

ସୁଧି ପାଠକମାନେ ନିଶ୍ଚୟ ସହମତ ହେବେ ଯେ ପୁସ୍ତକ ବଜାରରେ ବିଭିନ୍ନ ଦେବୀ, ଦେବତାଙ୍କ ମନଗଢ଼ା କାହାଣୀ ଉପରେ ଲେଖାଯାଇଥିବା ପୁସ୍ତକ ସବୁଠାରୁ ଅଧିକ ସଂଖ୍ୟାରେ ବିକ୍ରି ହେଉଛି । ଜ୍ଞାନ, ବିଜ୍ଞାନ, ସାହିତ୍ୟ, ଜୀବନ ଦର୍ଶନ ଆଦି ପୁସ୍ତକ ଖୁବ୍ କମ୍ ବିକ୍ରି ହୋଇଥାଏ । ସେହି ଅବିଶ୍ୱାସନୀୟ, ଅବୈଜ୍ଞାନିକ ତଥ୍ୟଗୁଡ଼ିକୁ ବିଶ୍ୱାସ କରୁଥିବା ପାଠମାନଙ୍କ ମଧ୍ୟରେ କେବଳ ଅର୍ଦ୍ଧଶିକ୍ଷିତ ନୁହଁନ୍ତି ଅନେକ ଉଚ୍ଚ ଶିକ୍ଷିତ ସ୍କୁଲ, କଲେଜର ପ୍ରାଧ୍ୟାପକ ବି ଅଛନ୍ତି ଯେଉଁମାନେ ଛାତ୍ରଙ୍କୁ କହୁଥିବେ - "ଯେ କୌଣସି ସାପ କାମୁଡ଼ିଲେ ଡାକ୍ତରଖାନାକୁ ନ ଯାଇ ଶିବ ମନ୍ଦିରକୁ ଯାଇ ଶୋଇପଡ଼ । ଶିବଙ୍କ ଆଜ୍ଞାରେ ସାପ ଆସି କାମୁଡ଼ା ସ୍ଥାନରୁ ବିଷ ଟାଣି ନେଇଯିବ । ଜଣେ ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ ତାଙ୍କର ଗୋଟିଏ ବହିରେ ସର୍ପ ସଂପର୍କରେ ଲେଖିଛନ୍ତି - "ଯେଉଁ ଲୋକଙ୍କୁ ସାପ ଦଂଶନ କରେ ତାକୁ ଯଦି ଶିବ ମନ୍ଦିରରେ ପାଲ ପକେଇ ଦିଆଯାଏ, ସାପ ଆସି ବିଷଟାଣି ନିଏ ଓ ଲୋକ ମୃତ୍ୟୁ ମୁଖରୁ

ବଞ୍ଚିଯାଏ । ଏହା ଅନ୍ଧବିଶ୍ୱାସ ନୁହେଁ ସତ କଥା ଅଟେ ।" ଲେଖକ ନାଗ ପଞ୍ଚମୀରେ ନାଗପୂଜା ପାଇଁ କୌଣସି ପୁରାଣରୁ ଉଦ୍ଧୃତ କରି କାହାଣୀ ଲେଖିଛନ୍ତି - "ଭାରତର ଏକ ନଗରରେ ଜଣେ ଗୌର ବ୍ରାହ୍ମଣ ବାସ କରୁଥିଲେ । ସେ ନାଗପୂଜାର ପବିତ୍ରତା ସମ୍ବନ୍ଧରେ ଅଜ୍ଞ ଥିଲେ । ନାଗପଞ୍ଚମୀ ଦିନ ନିଜ ବିଲରେ ହଳ ବୁଲାଇଲା ବେଳେ ଲଂଗଳ ମୁନ ବାଜି ଗୋଟିଏ ଗୋଖରର ଛୁଆ ଆଘାତ ପାଇ ମରିଗଲା । ମା'ଗୋଖରୀ ବିଲରୁ ଫେରି ପିଲାର ଏ ଦଶା ଦେଖି କ୍ରୋଧାନ୍ୱିତ ହେଲା । ଅନୁସନ୍ଧାନ କରି ଜାଣିଲା ବ୍ରାହ୍ମଣ ଏ କାଣ୍ଡ ଭିଆଇଛି । ଗୋଖରୀ ବ୍ରାହ୍ମଣ ଘରକୁ ଯାଇ ତାକୁ ଓ ତା'ପରିବାରର ଜଣ ଜଣ କରି ପ୍ରତ୍ୟେକଙ୍କୁ ଦଂଶନ କରି ମାରି ପକାଇଲା । କେବଳ ତା'ର ଗୋଟିଏ ଝିଅ ପାଖ ଗାଁରେ ବିଭା ହୋଇଥିବାରୁ ସେଇ କେବଳ ସର୍ପଦଂଶନରୁ ମୁକ୍ତି ପାଇଗଲା । ପୁରାଣ କଥା ଅନୁସାରେ ନାଗୁଣୀ ତାକୁ ମଧ୍ୟ ମାରିବାକୁ ଯାଇ ଯେତେବେଳେ ତା'ଘରେ ପହଞ୍ଚିଲା, ଦେଖିଲା ସେ ଝିଅ ନାଗପଞ୍ଚମୀ ଦିନ ଫୁଲ ଆଦି ଦେଇ ନାଗପୂଜା କରୁଛି । ଏହା ଦେଖି ସେ ପ୍ରୀତ ହେଲା ଓ ଝିଅର ଧର୍ମନିଷ୍ଠାରେ ମୁଗଧ ହୋଇ ନାଗୁଣୀ ତାକୁ ତାର ପିତାଓ ପରିବାରର ଅନ୍ୟମାନଙ୍କୁ ବଞ୍ଚାଇବା ପାଇଁ ଅମୃତ ଦାନ କଲା । ଝିଅ ସେହି ଅମୃତକୁ ନେଇ ମୃତ ବ୍ୟକ୍ତିମାନଙ୍କ ଉପରେ ଛିଞ୍ଚିବାରୁ ସେମାନେ ଜୀବନ ଫେରି ପାଇଲେ । କିମ୍ବଦନ୍ତୀ ଅନୁସାରେ ସେହିଦିନ ଠାରୁ ସେ ଗ୍ରାମର ସବୁ ସ୍ତ୍ରୀଲୋକ ଏବଂ ପରେ ସମଗ୍ର ଦେଶରେ ନାରୀମାନେ ଶ୍ରାବଣ ମାସରେ ନାଗପଞ୍ଚମୀ ପାଳନ କରିବାକୁ ଆରମ୍ଭ କଲେ ।"

ବିଡମ୍ବନା ହେଉଛି ଯେ ଜଣେ ଉଚ୍ଚଶିକ୍ଷିତ, ଓଡିଆ ଓ ହିନ୍ଦୀ ଭାଷାରେ ପି,ଜି କରିଥିବା, କବି, ପ୍ରାବନ୍ଧିକ, ଶିଶୁ ସାହିତ୍ୟିକ ଓ ସ୍ତମ୍ଭକାର ବିଭିନ୍ନ ପ୍ରାଥମିକ, ମାଧ୍ୟମିକ ବିଦ୍ୟାଳୟରେ ଶିକ୍ଷକତା କରି ଅବସର ନେଇଥିବା ବୟସ୍କବ୍ୟକ୍ତିଙ୍କ ରୁଦ୍ଧ ମାନସିକତା, ତାଙ୍କ ଲିଖିତ ପୁସ୍ତକ ମାନଙ୍କରେ ସ୍ପଷ୍ଟ ଭାବେ ପ୍ରତିଫଳିତ ହୋଇଛି । ଏଥିରୁ ଛାତ୍ର, ଛାତ୍ରୀଙ୍କୁ ତଥା ସମାଜକୁ କେଉଁ ଭଳି ଶିକ୍ଷା ମିଳିପାରିବ, ତାହା ବିଚାରଣୀୟ ବିଷୟ ନୁହେଁକି ?

*******

# ଧାର୍ମିକଶ୍ରଦ୍ଧା ବନାମ ଲୌକିକ ବିଶ୍ୱାସ

ମଣିଷ ଜନ୍ମରୁ ହିଁ ବିବେକବାଦୀ ପ୍ରଶ୍ନ ପଚାରିବାର ପ୍ରବୃତ୍ତି ପାଇଥାଏ। ବୟସ ବଢିବା ସହିତ ତା'ମନରେ ଚାରିପାଖର ସଂସାରକୁ ଜାଣିବା ଓ ବୁଝିବାର ଜିଜ୍ଞାସା ବି ବୃଦ୍ଧି ପାଇଥାଏ। ସଂସାରରେ ବିଦ୍ୟମାନ ସମସ୍ତ ପ୍ରାକୃତିକ ଏବଂ ଭୌତିକ ବସ୍ତୁ ବିଷୟରେ ଜାଣିବାପାଇଁ ସ୍ୱଭାବ ସୁଲଭ କୌତୁହଳ ଜାତ ହୋଇଥାଏ। ସେଥିପାଇଁ ସେ ନିଜଠାରୁ ବଡ ଲୋକମାନଙ୍କୁ ଲୌକିକ ଜଗତର ବସ୍ତୁସମ୍ପର୍କରେ କ'ଣ-କିପରି-କାହିଁକି-ଆଦି ପ୍ରଶ୍ନ, ତା'ମନ ବୁଝିବା ଭଳି ଉତ୍ତର ନପାଇବା ପର୍ଯ୍ୟନ୍ତ କ୍ରମାଗତ ଭାବେ ପଚାରିଥାଏ। ବସ୍ତୁଗୁଡିକ ସମ୍ପର୍କରେ ସନ୍ତୋଷଜନକ ଉତ୍ତର ପାଇବାପରେ, ଲୌକିକ ବସ୍ତୁଗୁଡିକୁ ବିଶ୍ୱାସ କରିବାପାଇଁ ସେ କୌଣସି ଅସୁବିଧା ଅନୁଭବ କରେ ନାହିଁ। ଏହି ପ୍ରବୃତ୍ତି ଯୋଗୁଁ ମଣିଷ ଏକ ବିବେକଶୀଳ ପ୍ରାଣୀ ବୋଲି କୁହାଯାଉଛି।

ଅନ୍ୟପକ୍ଷରେ ବଡମାନଙ୍କ ଦ୍ୱାରା ଶିଶୁର ପ୍ରଶ୍ନ କରିବାଭଳି ଜନ୍ମଜାତ ପ୍ରବୃତ୍ତିକୁ ବାଧା ଦେଇ ବାଧ୍ୟ କରାଯାଉଛି ଯେ, ତୁ ଏକ ଅଲୌକିକ ଜଗତ ଉପରେ ଶ୍ରଦ୍ଧା ରଖ ଏବଂ ସେହି ଅଲୌକିକ ଜଗତ ସମ୍ପର୍କରେ କ'ଣ, କିପରି ଓ କାହିଁକି ଭଳି ପଶ୍ନ ପଚାରିବା ଆବଶ୍ୟକ ନୁହେଁ। କାରଣ, ଆମେ (ବଡଲୋକ) କହୁଛୁ ତାହା ବିଦ୍ୟମାନ। ଆମେ ଅର୍ଥାତ ପିତା, ମାତା, ଗୁରୁଜନ, ସ୍କୁଲର ଶିକ୍ଷକ, ମନ୍ଦିରର ପୂଜକ, ମଠ ଓ ଆଶ୍ରମର ଧର୍ମଗୁରୁ ସମସ୍ତେ ବିନା ପ୍ରଶ୍ନକରି ଶ୍ରଦ୍ଧା ରଖିବାର ଉପଦେଶ ଶୁଣିଶୁଣି ମଣିଷ ବଡ ହେବାବେଳକୁ ତା'ର ବିବେକ ନିଷ୍ଠା ଏବଂ ପ୍ରଶ୍ନ କରିବାର ଜନ୍ମଜାତ ପ୍ରବୃତ୍ତି ଗୋଟିଏ ଅଦୃଶ୍ୟ ବନ୍ଧନରେ ସୀମାବଦ୍ଧ ହୋଇଯାଏ। ଗୋଟିଏ ରଢିବାଦୀ ପ୍ରବଚନ "ଶ୍ରଦ୍ଧାବାନ୍ ଲଭତେ, ସନ୍ଦେହାତ୍ମା ବିନଶ୍ୟତି" କିମ୍ବା ଓଡିଆରେ ପ୍ରଚଳିତ ଭାଗବତବାଣୀ "ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର" ଦ୍ୱାରାଗଭୀର ଭାବେ ପ୍ରଭାବିତ ହୋଇ ଅଧିକାଂଶ ମଣିଷ ଅଲୌକିକ ଜଗତର ଅନେକ କାଳ୍ପନିକ ବସ୍ତୁ ସ୍ଥାନ ଓ ପାତ୍ରଉପରେ ଅନ୍ଧଶ୍ରଦ୍ଧା ସ୍ଥାପନ କରିଥା'ନ୍ତି। ଯେଉଁ ବ୍ୟକ୍ତି ନିଜ ବୁଦ୍ଧି ଓ

ବିବେକକୁ ପ୍ରୟୋଗ କରି ଲୌକିକ ଜଗତର ସମସ୍ତକାମ କରିଥାଏ, ସେ ଲୌକିକ ବସ୍ତୁଗୁଡ଼ିକୁ ତନ୍ନତନ୍ନ କରି ପରୀକ୍ଷାକରି ଆଶ୍ୱସ୍ତ ହେବାପରେ ହିଁ ବିଶ୍ୱାସ କରିଥାଏ । ଜଣେ ବ୍ୟକ୍ତି ବଜାରରୁ କାରଠାରୁ ଜୋତା ପର୍ଯ୍ୟନ୍ତ କିଣିବାପୂର୍ବରୁ ଯେଉଁ କମ୍ପାନୀର ବସ୍ତୁରେ ଅଧିକ ଲାଭଜନକ ଗୁଣଥାଏ, ସେହିବସ୍ତୁ ଉପରେ ତା'ର ଶ୍ରଦ୍ଧାଥାଉ ବା ନଥାଉ ବିଶ୍ୱାସ ହେବାଯୋଗୁ କିଣିନିଏ ।

ପାରଲୌକିକ ଜଗତର କାଳ୍ପନିକ ସ୍ଥାନ ହେଉଛି-ସ୍ୱର୍ଗ, ନର୍କ, ଇନ୍ଦ୍ରଭବନ, ନନ୍ଦନକାନନ ଉଦ୍ୟାନ, ଅପସରାମାନଙ୍କ ନୃତ୍ୟ ସ୍ଥଳ ଓ ପାତାଳ । କାଳ୍ପନିକ ଚରିତ୍ର ହେଉଛନ୍ତି-ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସହିତ ତେତିଶକୋଟି ଦେବୀ ଓ ଦେବତା । କାଳ୍ପନିକ ବସ୍ତୁ ହେଉଛି-ଆତ୍ମା, ପରମାତ୍ମା, ମୋକ୍ଷ, ପୁନର୍ଜନ୍ମ ଆଦି ଯାହା ସମ୍ପର୍କରେ ଆଦିମ କାଳରୁ ଆଜି ପର୍ଯ୍ୟନ୍ତ କୌଣସି ପ୍ରକାର ପ୍ରମାଣିକ ତଥ୍ୟ ମିଳିପାରି ନାହିଁ । ସମସ୍ତେ କିନ୍ତୁ ଦୃଢ଼ତାର ସହିତ ଦାବି କରିଆସୁଛନ୍ତି ଯେ ଲୌକିକ ଜଗତଭଳି ପାରଲୌକିକ ଜଗତ ବି କେଉଁଠି ନା କେଉଁଠି ନିଶ୍ଚୟ ଅଛି । କେବଳ ଏକମାତ୍ର ସର୍ତ୍ତ ହେଉଛି-ଶ୍ରଦ୍ଧାରଖି ସ୍ମରଣ କଲେ ପାରଲୌକିକ ଜଗତ ସମ୍ପର୍କରେ ଅନୁଭବ ପ୍ରାପ୍ତ କରିପାରିବ । ଏହାର ବିପରୀତ ଆଜି ପର୍ଯ୍ୟନ୍ତ ଯେଉଁ ବ୍ୟକ୍ତିବିଶେଷ ଆଧ୍ୟାତ୍ମିକ ଜଗତକୁ ଅନୁଭବ କରିଥିବା ଦାବି କରିଛନ୍ତି, ସେମାନଙ୍କର ବାସ୍ତବିକ ଜୀବନ ଅନ୍ୟାନ୍ୟ ସାଧାରଣ ମଣିଷ ଭଳି ରୋଗ, ଶୋକ ଓ ଦୁଃଖ ଭୋଗ କରି ହିଁ ବିତିଛି ।

ପାରଲୌକିକ ଜଗତ ପ୍ରତିଶ୍ରଦ୍ଧା ଏବଂ ଲୌକିକ ଜଗତ ପ୍ରତି ବିଶ୍ୱାସ ଭିତରେ କିଛି ମୌଳିକ ପ୍ରଭେଦ ରହିଛି । ସେହି ପ୍ରଭେଦଗୁଡ଼ିକୁ ବୁଝିବାପାଇଁ ଉଦାର ଚିତ୍ତ ଓ ସ୍ୱାଧୀନ ଚିନ୍ତନର ଆବଶ୍ୟକ । ଲୌକିକ ଜଗତର ବିଶ୍ୱାସ କେବଳ ଲୌକିକ ବିଷୟରେ ପର୍ଯ୍ୟବସିତ ଥାଏ, କିନ୍ତୁ ଧାର୍ମିକ ଶ୍ରଦ୍ଧା ପାରଲୌକିକ ବିଷୟରେ ଥାଏ । ଲୌକିକ ଜଗତର ବିଶ୍ୱାସ କ୍ରମାଗତ ଭାବେ ନିର୍ବିବାଦ ଓ ସକାରାତ୍ମକ ଅନୁଭବ ଉପରେ ସ୍ଥାୟୀ ହୁଏ ଏବଂ ଗୋଟିଏ ବି ବିପରୀତ ଅନୁଭବର ବିରୋଧ ବା ପ୍ରତିବାଦ ସେହି ବ୍ୟକ୍ତିନିଷ୍ଠ ବିଶ୍ୱାସକୁ ସମୂଳେ ନଷ୍ଟ କରିଦେଇପାରେ, କିନ୍ତୁ ଧାର୍ମିକ ଶ୍ରଦ୍ଧା

କାହାରି ଅନୁଭବ ଉପରେ ଆଧାରିତ ନଥିବା ଯୋଗୁଁ କୌଣସି ବିପରୀତ ଅନୁଭବ ବା ବିରୋଧି ବିଚାରାଧାରା ତାକୁ ନଷ୍ଟ କରିପାରେ ନାହିଁ। ସେଥିପାଇଁ ଧାର୍ମିକ ଶ୍ରଦ୍ଧା ଅପରିବର୍ତ୍ତନୀୟ୍ ବାସ୍ଥିର ବୋଲି ଦାବି କରିଥା'ନ୍ତି।

ଲୌକିକ ବିଶ୍ୱାସ କୌଣସି ବ୍ୟକ୍ତିର ବଦଳିଗଲେ ତା'ର ବ୍ୟକ୍ତିତ୍ୱ ବଦଳିଯାଏନାହିଁ, କିନ୍ତୁ ଧାର୍ମିକ ଶ୍ରଦ୍ଧା ବ୍ୟକ୍ତି ଭିତରେ ବଦଳିଗଲେ ତା'ର ବ୍ୟକ୍ତିତ୍ୱ ବି ବଦଳି ଯାଏ। କାରଣ ତାକୁ ନୂତନ ଧର୍ମର ନୀତି, ନିୟମ ମାନିବାକୁ ବାଧ୍ୟ ହୋଇଥାଏ। ଲୌକିକ ବିଶ୍ୱାସ କୌଣସି ବ୍ୟକ୍ତିକୁ ଭାବପ୍ରବଣ ଯୋଗୁଁ କଟ୍ଟରପନ୍ଥୀ କରି ପାରେନାହିଁ, କିନ୍ତୁ ଧାର୍ମିକ ଶ୍ରଦ୍ଧା ମଣିଷକୁ ଭାବପ୍ରବଣ କରିଦେଉଥିବାରୁ ସେମାନେ ଅନ୍ୟଧର୍ମ ସମ୍ପ୍ରଦାୟର ଲୋକମାନଙ୍କୁ ମାରିବା ଏବଂ ନିଜେ ମରିବାପାଇଁ ଆଗେଇ ଆସନ୍ତି। ଲୌକିକ ବିଶ୍ୱାସ ପ୍ରତି ସମାଲୋଚନା କଲେ ବ୍ୟକ୍ତି ସଚେତନ ହୋଇ ନିଜର ଭୁଲ ସୁଧାରିବାକୁ ଚେଷ୍ଟାକରେ କିନ୍ତୁ ଧାର୍ମିକ ଶ୍ରଦ୍ଧା ପ୍ରତି ସମାଲୋଚନାକଲେ ବ୍ୟକ୍ତି ମାନସିକ ସ୍ତରରେ ଆଘାତ ପାଇଥାଏ। ଶ୍ରଦ୍ଧାଳୁ ବ୍ୟକ୍ତି ପ୍ରତିକ୍ରିୟା ଦର୍ଶାଇ ସମାଲୋଚକ ପ୍ରତି ହିଂସାତ୍ମକ ଆଚରଣ କରିବାକୁ ପଛାଏ ନାହିଁ। ଲୌକିକ ବିଶ୍ୱାସ ମଣିଷର ଯେ କୌଣସି ବୟସରେ ନିଜର ମତ ବା ବିଚାରଧାରା ପରିବର୍ତ୍ତନ କରିବାକୁ ସୁଯୋଗ ଦେଇଥାଏ, କିନ୍ତୁ ଧାର୍ମିକ ଶ୍ରଦ୍ଧା ମଣିଷକୁ ଆଜୀବନ ଗୋଟିଏ ବିଚାରଧାରାରେ ବାନ୍ଧି ହୋଇ ରହିବାକୁ ମାନସିକ ଭାବେ ବାଧ୍ୟ କରିଥାଏ। ଶ୍ରଦ୍ଧାଳୁ ବ୍ୟକ୍ତିମତ ପରିବର୍ତ୍ତନ କଲେ ତା'ର କଥିତ ସମାଜ ତାକୁ ଘୃଣା ଓ ତିରସ୍କାର କରିଥାଏ। ତେବେ ଜୀବନର ଉନ୍ନତି ଓ ବିକାଶପାଇଁ କେଉଁ ପଥଟି ଗ୍ରହଣ କରିବା ଆବଶ୍ୟକ-ଧାର୍ମିକ ଶ୍ରଦ୍ଧା ନା ଲୌକିକ ବିଶ୍ୱାସ ?

*******

# ମିଥ୍ୟା ପୂଜା କାହିଁକି

ଆଲେଖ୍ୟର ଶୀର୍ଷକଟି ପଢି ପାଠକମାନେ ହୁଏତ ସନ୍ଦେହ ପ୍ରକଟ କରି ପ୍ରଶ୍ନ କରିବେ-କୌଣସି ମିଥ୍ୟାକୁ କିଏ, କାହିଁକି ବା ପୂଜା କରିବ ? ଯିଏ ବି ଯେଉଁଭଳି ପୂଜା କରୁଛି, ତା'ମୂଳରେ କୌଣସି ସତ୍ୟତା ନିଶ୍ଚୟ ରହିଥିବ । ହଁ, ସତ୍ୟତା ନିଶ୍ଚୟ ଥାଏ, କିନ୍ତୁ ସେହି ସତ୍ୟତା କେବଳ ଧର୍ମୀୟ ଭିତ୍ତିହୀନ ବିଶ୍ୱାସ ଉପରେ ପର୍ଯ୍ୟବସିତ ଥାଏ । ଯଥା :- ସୂର୍ଯ୍ୟଦେବଙ୍କୁ ଶକ୍ତିର ସ୍ରୋତପାଇଁ, ଇନ୍ଦ୍ରଦେବଙ୍କୁ ଜଳପାଇଁ, ପବନ ଦେବଙ୍କୁ ପ୍ରାଣବାୟୁପାଇଁ, ଚନ୍ଦ୍ରକୁ ଶୀତଳ ଆଲୋକପାଇଁ ଆମେ ପୂଜା କରୁଛୁ । ଏଇଠି ପ୍ରଶ୍ନ ଉଠୁଛି ଯେ-ଯଦି ଆମେ ସମସ୍ତେ ସେମାନଙ୍କୁ ପୂଜା ନକରିବା, ତେବେ କ'ଣ ସେମାନେ ଉତ୍ତାପ, କିରଣ, ପାଣି ଓ ପବନ ଦେବାବନ୍ଦ କରିଦେବେ ? କଦାପି ନୁହେଁ । ଏହାର ବିପରୀତ ଆମେ ଦେଖୁଛୁ-ଯେଉଁମାନେ ଏହିଭଳି ଦାର୍ଶନିକ ଯୁକ୍ତି ଦିଅନ୍ତି, ସେହିମାନେ ହିଁ ନିଜ ପରିବାର, ସମାଜ ଓ ରାଜ୍ୟଠାରୁ ଯେଉଁ ଉପକାର ପାଉଛନ୍ତି, ସେଥିପାଇଁ କୃତଜ୍ଞତା ପ୍ରକଟ କରୁନାହାଁନ୍ତି ।

ଆସନ୍ତୁ ଦେଖିବା ପୂଜାର ଆବଶ୍ୟକତା କାହିଁକି ? ଆଦିମ କାଳରୁ ଆଦିମାନବ ପ୍ରାକୃତିକ ବିପର୍ଯ୍ୟୟଗୁଡିକର କାରଣ ବୁଝିପାରୁ ନଥିବାରୁ ନିଜର ସୁରକ୍ଷାପାଇଁ ଭୟରେ ନମ୍ରତା ପ୍ରଦର୍ଶନ ପୂର୍ବକ ଅଗ୍ନି, ଜଳ, ପବନ, ସାପ, ହିଂସ୍ର ଜନ୍ତୁ ଆଦିଙ୍କୁ ଐଶ୍ୱରୀୟ ଶକ୍ତି ଭାବି ପୂଜାର ଆରମ୍ଭ କରିଥିଲା । ପରବର୍ତ୍ତୀ କାଳରେ ବି ସେହି ଭୟ ବିଭିନ୍ନ କାରଣରୁ ମଣିଷକୁ ଆତଙ୍କିତ କରି ରଖୁଥିବାରୁ ପୂଜା ପରମ୍ପରା ଚାଲିଆସୁଛି । ନିଜେ ଏବଂ ନିଜ ପରିବାରକୁ ସମସ୍ତେ ପ୍ରକାର ବିପଦ ଓ ସମସ୍ୟାରୁ ମୁକ୍ତ ରଖିବା ଏବଂ ସୁଖ, ସମ୍ଭୋଗର ଗ୍ୟାରେଣ୍ଟି ପ୍ରାପ୍ତ କରିବାର ସ୍ୱାର୍ଥ ମନୋବୃତ୍ତି ଯୋଗୁଁ ପୂଜାର ଆବଶ୍ୟକତା ସମସ୍ତେ ଅନୁଭବ କରୁଛନ୍ତି ବୋଲି କୁହାଯାଇପାରିବ । ଏଠାରେ ପୁଣି ଗୋଟିଏ ପ୍ରଶ୍ନ ଆସୁଛି - ମଣିଷକୁ ସୁରକ୍ଷା, ସୁଖ ଓ ସମ୍ଭୋଗ ଦେଇପାରିବାର ଶକ୍ତି କାହା ପାଖରେ ଅଛି ଯାହାକୁ କି ପୂଜା ଦ୍ୱାରା ସନ୍ତୁଷ୍ଟ କରାଯାଇ, ସେସବୁ ହାସଲ କରିହେବ ? ଆମେ ଦେଖୁଛୁ-ଭୌତିକ ଦୁନିଆରେ ଯେତେ ପ୍ରକାର

ପ୍ରାକୃତିକ ସମ୍ପଦ ଅଛି, ସେସବୁଠାରୁ ଆମେ ଆମର ବ୍ୟବହାର ଉପଯୋଗୀ ଖାଦ୍ୟ, ବସ୍ତ୍ର, ଔଷଧ ବାସସ୍ଥାନ ଓ ସୌଖିନ ବସ୍ତୁ ପାଇବାପାଇଁ ଆମକୁ ତା'ର ମୂଲ୍ୟ ଧନ କିମ୍ବା ସେବା ରୂପେ ଦେବାକୁ ପଡୁଛି । ବିନା ମୂଲ୍ୟରେ କିଛି ବି ମିଳୁନାହିଁ ।

କିଛି ଲୋକ ବିଶ୍ୱାସ କରୁଛନ୍ତି ଯେ ଅଧିଭୌତିକ ଦୁନିଆରେ ରହୁଥିବା ଐଶ୍ୱରୀୟ ଶକ୍ତିମାନଙ୍କୁ କେବଳ ଭକ୍ତିର ସହ ପୂଜା କଲେ ଆମକୁ ସକଳ ଭୌତିକ ବସ୍ତୁ ସହଜରେ ମିଳିଯିବ । ସେମାନଙ୍କ ବିଶ୍ୱାସ ବି ସତ ପ୍ରାମାଣିତ ହେଉଛି । କାରଣ, ସେମାନେ କିଛି ପରିଶ୍ରମ ନକରି ମଧ୍ୟ ବେଶ୍ ପେଟପୂରା ସୁସ୍ୱାଦୁଖାଦ୍ୟ, ରହିବାକୁ ସୁନ୍ଦର ଘର ଓ ପିନ୍ଧିବାକୁ ବସ୍ତ୍ର ମାଗଣାରେ ପାଉଛନ୍ତି । ନିଶ୍ଚୟ ଭାବେ କ୍ଷେତରେ ଚାଷ କରୁଥିବା, କଳକାରଖାନରେ ପରିଶ୍ରମ କରୁଥିବା କିଛି କର୍ମଠ ମଣିଷମାନଙ୍କ ଯୋଗୁଁ ଖାଦ୍ୟ ଓ ବସ୍ତ୍ର ପ୍ରସ୍ତୁତ ହେଉଛି । ଏଥିରୁ ସ୍ପଷ୍ଟ ଭାବେ ବୁଝାପଡୁଛି ଯେ ମଣିଷକୁ ଏହି ଦୁନିଆରେ ବଞ୍ଚିରହିବାପାଇଁ ଆବଶ୍ୟକ ବସ୍ତୁଗୁଡିକ କେବଳ ଭୌତିକ ଦୁନିଆରେ ହିଁ ରହିଛି ଏବଂ ମଣିଷର ଶାରୀରିକ ଓ ମାନସିକ ପରିଶ୍ରମ ବିନା କିଛି ବି ଉପଭୋଗ୍ୟ ବସ୍ତୁ ଉତ୍ପାଦନ ସମ୍ଭବ ନୁହେଁ । ପୂଜା କରି କ'ଣ ଆମେ ଖରା, ବର୍ଷା, ଶୀତ ଓ ପବନକୁ ନିୟନ୍ତ୍ରିତ କରିପାରିବା ? କେବେ ନୁହେଁ । କିନ୍ତୁ ଖରା, ବର୍ଷା, ଶୀତ ଓ ପବନର ଦାଉରୁ ନିଜକୁ ସୁରକ୍ଷିତ ରଖିବାର ଉପାୟ ଚିନ୍ତା କରିପାରିବା ।

ପୂଜା ଓ ପ୍ରାର୍ଥନାର ଧାର୍ମିକ ମତ ସହିତ ସମସ୍ତେ ପରିଚିତ, କିନ୍ତୁ ଏହାର ହେତୁବାଦୀ ମତ ହେଉଛି-ପୂଜା ଓ ପ୍ରାର୍ଥନା ଦ୍ୱାରା ତଥାକଥିତ ଐଶ୍ୱରୀୟ ଶକ୍ତିଗୁଡିକୁ ସନ୍ତୁଷ୍ଟ କରି, ପ୍ରାକୃତିକ ନିୟମଗୁଡିକୁ ନିଜ ସପକ୍ଷରେ ପରିବର୍ତ୍ତନ କରିବାର ମାନସିକତା । ଏହା କେବେ ସମ୍ଭବ କି ?

କେତେକ ସ୍ଥଳରେ କାକତାଳୀୟ ନ୍ୟାୟରେ ପୂଜା କରିବା ପରେ ପାଗ ଯଦି ପରିବର୍ତ୍ତନ ହୋଇଯାଏ, ତେବେ ଲୋକମାନଙ୍କ ବିଶ୍ୱାସ ବଢିଯାଏ । କିନ୍ତୁ ଆମ ଆଗରେ ପ୍ରତିଦିନ ହଜାରହଜାର ଉଦାହରଣ ଦେଖାଯାଉଛି ଯେ, ପୂଜା ଦ୍ୱାରା ସେପରି ହେଉନାହିଁ । ବିଭିନ୍ନ ଧର୍ମସ୍ଥଳଗୁଡିକରେ ପୂଜା ହେଉଥିବା ସମୟରେ ହିଁ ପ୍ରାକୃତିକ

ବିପର୍ଯ୍ୟୟ ଘଟି ଅସଂଖ୍ୟ ଭକ୍ତଙ୍କର ଜୀବନହାନୀ ହେଉଛି । ଭକ୍ତମାନଙ୍କର ତଥାପି ଜ୍ଞାନଚକ୍ଷୁ ଖୋଲିପାରୁନି କିମ୍ବା ସେମାନେ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦୁର୍ଘଟଣାଜନିତ କ୍ଷୟକ୍ଷତିର କାରଣ ଉପରେ ବିଚାର କରୁନାହାଁନ୍ତି । ସେମାନେ କେବଳ ଆସ୍ଥା ବା ବିଶ୍ୱାସକୁ (ଭିତ୍ତିହୀନ ବିଶ୍ୱାସ) ଠେସ ଦେଲାଭଳି ଯୁକ୍ତି ଦର୍ଶାଇଥା'ନ୍ତି । "ଯାହାର ଯେଉଁଠି ମୃତ୍ୟୁଯୋଗ ଲେଖା ଅଛି, ସେ ସେଇଠି ହିଁ ମରିବ ।" ମନକୁ ସାନ୍ତ୍ୱନା ଦେବାକୁ ଏହା ଏକ ଛଳନା ନୁହେଁ କି ?

ମିଥ୍ୟାକୁ ପୂଜା କରିବାପାଇଁ ଆଜିକାଲି ଅସଂଖ୍ୟ ତଥାକଥିତ ବାବା ଓ ମାତା ଛତୁ ଫୁଟିବା ଭଳି ଆମ ଦେଶରେ ଭର୍ତ୍ତି ହୋଇଗଲେଣି । ବିଭିନ୍ନ ଟିଭି ଚ୍ୟାନେଲମାନେ ନିଜର ଟିଆରପି ବଢେଇବାପାଇଁ ସେହି ବାବା ଓ ମାତାମାନଙ୍କ ସହ ବ୍ୟବସାୟିକ ଏଗ୍ରିମେଣ୍ଟ କରି ନେଉଛନ୍ତି । ଦର୍ଶକମାନଙ୍କୁ ମନ ଭୁଲାଣିଆ ପ୍ରବଚନରେ ପ୍ରଭାବିତ କରି ଧନ ଲୁଟିନେବାର ଅନେକ ଉପାୟ ସେମାନଙ୍କୁ ଜଣାଥାଏ । ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ଯେ, ଆଜିର ବୈଜ୍ଞାନିକ ଶିକ୍ଷାପ୍ରାପ୍ତ ଯୁବକ ଯୁବତୀମାନେ ସବୁଠାରୁ ଅଧିକ ସଂଖ୍ୟାରେ ବାବା ଓ ମାତାଙ୍କ ମଠ ଓ ଆଶ୍ରମରେ ଧାଡିବାନ୍ଧି ଠିଆହେଉଛନ୍ତି । ସେମାନେ ଜୀବନରେ ସୁଖ ସମ୍ଭୋଗ ପ୍ରାପ୍ତ କରିବାପାଇଁ କେବଳ ଚମତ୍କାର ଉପରେ ଭରସା କରୁଛନ୍ତି କାହିଁକି ?

ମୋଟ ଉପରେ କହିବାକୁ ଗଲେ - ପୂଜା ଯେଉଁଭଳି କରାଯାଉ ନା କାହିଁକି, ତା'ର କୌଣସି ମହତ୍ତ୍ୱ ନାହିଁ । ମଣିଷକୁ ସଫଳ ହେବାପାଇଁ ସୁଖ ଓ ଶାନ୍ତିରେ ବଞ୍ଚିବାପାଇଁ କେବଳ ଶାରୀରିକ ଏବଂ ମାନସିକ ପରିଶ୍ରମ କରିବାକୁ ହିଁ ପଡିବ ।

*******

# ଆସ୍ତିକବାଦର ଅହେତୁବାଦୀ ପକ୍ଷ

ଆସ୍ତିକବାଦ ମଣିଷ ସମାଜର ଅଶେଷ କ୍ଷତି କରିଛି ବୋଲି କହିଲେ, ଅଧିକାଂଶ ବ୍ୟକ୍ତି ତୀବ୍ର ବିରୋଧ କରିବେ। ଧର୍ମଗ୍ରନ୍ଥଗୁଡିକୁ ଲେଖିବା, ପଢିବା, ବ୍ୟାଖ୍ୟା କରିବା, ଅନୁବାଦ କରିବା, ଅନୁଶୀଳନ କରିବା, ଗବେଷଣା କରିବା ଓ ଲୋକମାନଙ୍କୁ ପ୍ରବଚନ ମାଧ୍ୟମରେ ବୁଝାଇବାପାଇଁ ଯେଉଁ ମୂଲ୍ୟବାନ ମାନବ ସମ୍ବଳ ଖର୍ଚ୍ଚ ହେଉଛି, ତାହାର ବଦଳରେ ମଣିଷ ସମାଜକୁ ମିଳୁଛି କ'ଣ ?

ଧର୍ମଗୁରୁମାନେ ଧର୍ମଗ୍ରନ୍ଥ ମନ୍ଥନକରି ଯେଉଁ ଜ୍ଞାନ ପ୍ରାପ୍ତ କରନ୍ତି, ତାହା ସବୁ ପ୍ରବଚନ ରୂପେ ବ୍ୟକ୍ତ କରନ୍ତି। ମୋଟ ଉପରେ ପ୍ରବଚନର ସାର ହେଉଛି- ମିଥ୍ୟା କୁହନାହିଁ। ଚୋରି, ଡକାୟତି, ବେଇମାନୀ, ବ୍ୟଭିଚାର, ଅନାଚାର କିମ୍ବା ଶୋଷଣ କରନାହିଁ। ଜୀବେ ଦୟାକର ହିଂସା କରନାହିଁ। ଶେଷରେ ମହତ୍ତ୍ୱପୂର୍ଣ୍ଣ ପ୍ରଚାର ହେଉଛି 'ଧନ ହେଉଛି ମାୟା, ମୋହର ବନ୍ଧନ ତେଣୁ ତାକୁ ତ୍ୟାଗ କର।" ଏହି ଶେଷ କଥାକୁ ବିଚାର କରାଯାଉ। ଜଣେ ସାଧାରଣ ଗୃହସ୍ଥ ପରିବାର ପୋଷଣର ନୈତିକ ଦାୟିତ୍ୱ ବହନ କରିଥିବାରୁ ଧନରୋଜଗାର କରିବାପାଇଁ କଠିନ ପରିଶ୍ରମ କରିଥାଏ। ତା'ର ପରିଶ୍ରମ ଫଳସ୍ୱରୂପ ସେ ଅଳ୍ପ କିମ୍ବା ବହୁତ ଧନ ରୋଜଗାର କରିପାରିଥାଏ। ସେ ଯଦି ପ୍ରବଚନ ବାଚକ ଭଳି ଗୃହତ୍ୟାଗୀ, ପଳାୟନବାଦୀ ସାଧୁ ହୋଇଥା'ନ୍ତା, ସେ କ'ଣ ଧନ ରୋଜଗାର କରିବାକୁ ଇଚ୍ଛା କରିଥା'ନ୍ତା କି ? ହାତରେ ଧନ ନଥିଲେ ସେ କ'ଣ ତ୍ୟାଗ କରିଥା'ନ୍ତା ? ଦ୍ୱିତୀୟତଃ ନିଜ ପରିବାର ପ୍ରତିପୋଷଣ କରୁଥିବା ଗୃହସ୍ଥପାଇଁ ଯଦି ଧନ ହେଉଛି ମୋହ ମାୟାର ବନ୍ଧନ ତେବେ ସଂସାରତ୍ୟାଗୀ ସାଧୁ ଦାନ ଦକ୍ଷିଣା ଆକାରରେ ନେଉଥିବା ଧନ କ'ଣ ମୋହମାୟାର ବନ୍ଧନ ନୁହେଁ ? ଆଜିର ଯୁଗରେ ତଥାକଥିତ ବାବାମାନଙ୍କର କେତେକେତେ ସମ୍ପତ୍ତି ଠୁଳ ହୋଇଛି କିଏ ବା ନଜାଣେ ?

କୌଣସି ଗୁରୁ କେବେ ଭକ୍ତମାନଙ୍କୁ ଚାଷ ସମ୍ପର୍କୀୟ, ବୈଷୟିକ ସମ୍ପର୍କୀୟ କିମ୍ବା ବିଜ୍ଞାନ ସମ୍ପର୍କୀୟ ଜ୍ଞାନ ପ୍ରବଚନରେ ଶୁଣାଉଛନ୍ତି କି ? ଜୀବନରେ ବ୍ୟବହାର୍ଯ୍ୟ

କୌଣସି ଗୋଟିଏ ବି ଜିନିଷ ଧର୍ମଶାସ୍ତ୍ର ଦ୍ୱାରା ଉତ୍ପାଦନ ହୋଇପାରି ନାହିଁ । ଧର୍ମଶାସ୍ତ୍ରରୁ ଯାହା ମିଳିଛି, ତାହା କେବଳ ସ୍ୱପ୍ନ । ଯାହା କେବେ ବି ପୂରଣ ହୁଏ ନାହିଁ । କିନ୍ତୁ ପୂରଣ ହେବାର ଗଭୀର ବିଶ୍ୱାସକୁ ନେଇ ଜୀବନର ଶେଷ ନିଃଶ୍ୱାସ ତ୍ୟାଗ କରିଥାଏ ଅବୋଧ ମଣିଷ ।

ଆସ୍ତିକବାଦ ଦ୍ୱାରା ମଣିଷ ସମାଜର ଦ୍ୱିତୀୟ କ୍ଷତି ହେଉଛି-ମଣିଷ ଆତ୍ମବିଶ୍ୱାସ ହରେଇ ବସୁଛନ୍ତି । ଅନେକ ପ୍ରକାର ଭିତ୍ତିହୀନ ବିଶ୍ୱାସ ମନରେ ସ୍ଥାୟୀ ରୂପେ ଜମାହୋଇ ରହୁଥିବାରୁ ସ୍ୱଭାବତଃ ମଣିଷ ଭୟଭୀତ ତଥା ଅସହାୟ ବୋଧ କରିଥାଏ । ରାସ୍ତା ଉପରେ ଲାଲ୍ କନାରେ କିଛି ବନ୍ଧାହୋଇ ପୁଡିଆଟିଏ ପଡିଥିବା ଦେଖିଲେ ଧର୍ମଭୀରୁ ମଣିଷ ଭୟରେ ଛାନିଆ ହୋଇ ଦୁଇପାଦ ପଛକୁ ଘୁଞ୍ଚିଆସୁଛି । କଳା ବିଲେଇଟିଏ ରାସ୍ତା ପାର୍ କରିଗଲେ ଆଜି ବି ନବେ ପ୍ରତିଶତ ବ୍ୟକ୍ତି ନିର୍ଭୟରେ ଆଗେଇ ଯିବାକୁ ସାହସ କରୁନାହାନ୍ତି । ଆସ୍ତିକବାଦ ମଣିଷଠାରୁ କ୍ଷମତା ଓ ପ୍ରତିଭା ଉପରେ ଥିବା ଆତ୍ମବିଶ୍ୱାସକୁ ବି କମ୍ କରିଦେଉଛି । ମଣିଷକୁ ପରୋକ୍ଷଭାବେ ଦୈବୀଶକ୍ତିର ଗୋଲାମ ବନେଇ ଦେଉଛି ।

"ଭୟ" ପ୍ରାଣୀ ଭିତରେ ଅତିରିକ୍ତ କ୍ରୂରତାକୁ ଜନ୍ମ ଦେଇଥାଏ । ଭୟଭୀତ ବ୍ୟକ୍ତି ନିଜକୁ ଅସୁରକ୍ଷିତ ମନେକରିଥାଏ ଏବଂ ସେ ଅନ୍ୟ ପ୍ରତି ଅଧିକ କ୍ରୂର ବ୍ୟବହାର କରିଥାଏ । ନିଜ ଅଧିକାରପାଇଁ ସଂଘର୍ଷ କରୁଥିବା ମହିଳାମାନଙ୍କୁ ପ୍ରତ୍ୟେକ ଦେଶରେ ଡାହାଣୀର ଆଖ୍ୟା ଦେଇ ଅତ୍ୟାଚାର କରାଯାଏ ଏବଂ ହତ୍ୟା ବି କରାଯାଏ । ନୂତନ ଚିନ୍ତାଧାରା ବ୍ୟକ୍ତ କରୁଥିବା ବୁଦ୍ଧିଜୀବୀ, ବୈଜ୍ଞାନିକ ଓ ଦାର୍ଶନିକମାନଙ୍କୁ ମୌଳବାଦୀମାନେ ଅତି ନିଷ୍ଠୁର ଭାବେ ବିଷପାନ କରାଇ କିମ୍ବା ଅଗ୍ନିରେ ପୋଡ଼ି ହତ୍ୟା କରିଛନ୍ତି ।

ପ୍ରାଣୀ ଜଗତରେ ମନୁଷ୍ୟ ଏକ ବିବେକଶୀଳ ପ୍ରାଣୀ । କିନ୍ତୁ ଈଶ୍ୱରଙ୍କ ଉପରେ ଆସ୍ଥା ରଖୁଥିବା ମନୁଷ୍ୟ ନିଜ ବିବେକକୁ ବ୍ୟବହାର କରିପାରେ ନାହିଁ । ଶାରୀରିକ ଓ ମାନସିକ ଭାବେ ସୁସ୍ଥ ତଥା ଶିକ୍ଷିତ ବ୍ୟକ୍ତିର ମନରେ ବି ଭୂତ,

ପ୍ରେତକୁ ଡରିବା, ଶୁଭ, ଅଶୁଭ ଦିନକୁ ମାନିବା, ବିଷ ଓ ଅମୃତବେଳା ଦେଖି କାମ ଆରମ୍ଭ କରିବା ଭଳି ତର୍କହୀନ ବିଶ୍ୱାସ ଜନ୍ମ ନେଇଥାଏ। "ଆସ୍ତିକବାଦ" ଅପ୍ରାକୃତିକ ଶକ୍ତି, ମନଗଢା କାହାଣୀ ଉପରେ ବିଶ୍ୱାସ କରିବାକୁ ଶିକ୍ଷା ଦେଉଛି, ଏପରିକି ଶିକ୍ଷିତ ବ୍ୟକ୍ତିମାନଙ୍କୁ ବି ଅଜ୍ଞାନୀଙ୍କ ଭଳି ବ୍ୟବହାର କରିବାକୁ ଶିକ୍ଷା ଦେଉଛି।

ଆସ୍ତିକବାଦ ଦ୍ୱାରା ଆଉ ଏକ କ୍ଷତି ହେଉଛି- ମନୁଷ୍ୟ ଈଶ୍ୱରଙ୍କ ବାହାନାରେ ନିଜର ଉତ୍ତରଦାୟିତ୍ୱରୁ ମୁକ୍ତି ପାଇ ଯାଉଛି। ସେ ନିଜେ ଭୁଲ୍ କାମ କରିଥିବା ଯୋଗୁଁ ପରିଣାମ ମନ୍ଦ ହେଲେ, କହିଦିଏ - ସବୁକିଛି ଈଶ୍ୱରଙ୍କ ଇଚ୍ଛା, ମୁଁ ଛାର ମଣିଷ କ'ଣ ବା କରିପାରିବି ? ଏହି ଗୋଟିଏ ବାକ୍ୟ କହି ସେ ନିଜର କର୍ତ୍ତବ୍ୟ, ଉତ୍ତରଦାୟିତ୍ୱ ଓ ନେଇଥିବା ଭୁଲ୍ ନିର୍ଣ୍ଣୟରୁ ମୁକ୍ତି ପାଇଯାଉଛି। ଅନ୍ୟ ପକ୍ଷରେ ସେ ନିଜକୁ ଈଶ୍ୱରଙ୍କର କେବଳ ଆଦେଶ ପାଳନକାରୀ ବିଶ୍ୱସ୍ତ ଭକ୍ତ ରୂପେ ପ୍ରମାଣିତ କରିଦେଉଛି। କିନ୍ତୁ ଏହାଦ୍ୱାରା ତା'ର ବ୍ୟକ୍ତିତ୍ୱ, ମାନବିକତା, ସମ୍ବେଦନଶୀଳତା ଓ ସାମାଜିକ ପ୍ରତିବଦ୍ଧତା କେତେ ଦୂର କ୍ଷତିଗ୍ରସ୍ତ ହେଉଛି, ସେ କଥା ସେ ଅନୁଭବ କରିପାରୁନି। ନିଜ ବିବେକ ଆଗରେ ଦୋଷୀ ହୋଇଥିଲେ ବି ନିଜର ଭୁଲପାଇଁ ଅପରାଧ ବୋଧ ଅନୁଭବ କରୁନାହିଁ।

ଆସ୍ତିକବାଦକୁ ଗ୍ରହଣ କରିବା ଅତି ସହଜ କାମ। ଏହା ପିଲା ଖେଳ ସଦୃଶ। ଏହା ଏକ ପରିବାର ପ୍ରଦତ୍ତ ସଂସ୍କାର ମାତ୍ର। ପ୍ରତ୍ୟେକ ପିଲା ନିଜ ପରିବାର ଲୋକମାନଙ୍କ ବିଶ୍ୱାସ ଅନୁସାରେ ଈଶ୍ୱର, ଆଲ୍ଲା, ଗଡ୍ କିମ୍ବା ଅନ୍ୟ ଦେବତାଙ୍କ ବିଶ୍ୱାସୀ ହୋଇଯାଆନ୍ତି। ଈଶ୍ୱରଙ୍କ ଅସ୍ତିତ୍ୱକୁ ମାନିବାପାଇଁ କୌଣସି ବିଶେଷ ବିଦ୍ୟା, ବୁଦ୍ଧି, ଚିନ୍ତନ, ମନନ କିମ୍ବା କର୍ମକୁଶଳତାର ଆବଶ୍ୟକ ନାହିଁ। ପିଲାଟି ନିଜ ବାପା, ମାଆ, ଭାଇ ଭଉଣୀ ଓ ଗୁରୁଜନଙ୍କ ଦ୍ୱାରା ଈଶ୍ୱରଙ୍କ ପାଇଁ ତ କରୁଥିବା ପୂଜା, ପ୍ରାର୍ଥନା ଆଦି ଦେଖି ଖୁବ୍ ସହଜରେ ଆସ୍ତିକ ହୋଇଯାଏ।

ନାସ୍ତିକବାଦ ହେଉଛି ଏକ କଷ୍ଟସାଧ୍ୟ କାମ। କାରଣ ପ୍ରତ୍ୟେକ ନାସ୍ତିକବାଦୀ ମଣିଷ ଗୋଟିଏ ଆସ୍ତିକ ପରିବାରରେ ହିଁ ଜନ୍ମଗ୍ରହଣ କରିଥାଏ। ପିଲାଟି ବେଳୁ

ତା'ମନରେ ଆସ୍ତିକବାଦର ଛାପ ପଡିସାରିଥାଏ। ପିଲାଟି ବଡ ହେବାପରେ ତା'ର ଉର୍ବର ମସ୍ତିଷ୍କରେ ଯଦି ପ୍ରଶ୍ନ ଉଠିବ, ସେ ଯଦି ଈଶ୍ୱରଙ୍କ ଅସ୍ତିତ୍ୱକୁ ନେଇ ସନ୍ଦେହ ପ୍ରକଟ କରିବ, ସମାଜରେ ପ୍ରଚଳିତ ପଦ୍ଧତିକୁ ତର୍କ ସଙ୍ଗତ ଭାବେ ଅନୁଶୀଳନ କରିବ ଏବଂ ଧର୍ମ ବିଶ୍ୱାସୀ ସମାଜକୁ ଶାସନ କରୁଥିବା ମୌଳବାଦୀ ଗୋଷ୍ଠୀଙ୍କୁ ପ୍ରତିବାଦ କରିବାର ସାହସ ସଞ୍ଚୟ କରିପାରିବ ତେବେ ହିଁ ସେ ନାସ୍ତିକବାଦକୁ ଗ୍ରହଣ କରିପାରିବ। ଆଜି ପର୍ଯ୍ୟନ୍ତ ପୃଥିବୀରେ ଜନ୍ମଗ୍ରହଣ କରିଥିବା ପ୍ରାୟ ସମସ୍ତ ହେତୁବାଦୀମାନଙ୍କର ଜୀବନ ବହୁ ବାଧାବିଘ୍ନ ଦେଇ ଗତିକରିଛି।

ଈଶ୍ୱର ଏବଂ ତାଙ୍କର ବିଭିନ୍ନ ଅବତାରକୁ ପ୍ରସନ୍ନ କରି ଭକ୍ତମାନଙ୍କୁ ସୁଖ ଓ ଶାନ୍ତି ପ୍ରାପ୍ତ କରାଇବାପାଇଁ ପୂଜକ ଗୋଷ୍ଠୀର ଜନ୍ମ ହୋଇଥିଲା। ସେମାନଙ୍କର ଜୀବିକା ଅର୍ଜନ ହେଉଛି ଭକ୍ତମାନଙ୍କଠାରୁ ମିଳୁଥିବା ଦାନ ଓ ଦକ୍ଷିଣା। ସମସ୍ତ ପ୍ରକାର ଧର୍ମୀୟ ଆୟୋଜନ, କର୍ମକାଣ୍ଡ ଏବଂ ଧର୍ମୀୟବ୍ୟାପାର ଈଶ୍ୱର ଅବଧାରଣା ଉପରେ ହିଁ ଆଧାରିତ ହୋଇଛି। ଉପରୋକ୍ତ ଆଲୋଚନାର ଅଭିପ୍ରାୟ ହେଉଛି - "ଈଶ୍ୱର" ମନୁଷ୍ୟର କେବଳ କଳ୍ପନା ପ୍ରସୂତ ଶକ୍ତି ନୁହେଁ କିମ୍ବା "ଈଶ୍ୱର" ଆଦିମାନବର ଅବୋଧ ବିଶ୍ୱାସରୁ ଜାତ କୌଣସି ମାୟାବୀ ଚରିତ୍ର ନୁହେଁ। ଏହା ମାନବ ଜାତିର ଏକ ହାନୀକାରକ ଅବଧାରଣା ଯାହା ମଣିଷମାନଙ୍କ ମଧ୍ୟରେ ବିଷମତା ସୃଷ୍ଟି କରୁଛି ଏବଂ ଗୋଟିଏ ଧର୍ମ ସମ୍ପ୍ରଦାୟର ମଣିଷ ଦ୍ୱାରା ଅନ୍ୟ ଏକ ଧର୍ମ ସମ୍ପ୍ରଦାୟର ମଣିଷମାନଙ୍କୁ ଗୋଲାମ ବନେଇ ରଖିବାକୁ ନିର୍ଦ୍ଦେଶ ଦେଉଛି। ଗୋଲାମ ବନେଇବା ସମ୍ଭବ ନହେଲେ ହତ୍ୟା କରିଦେବାକୁ ନିର୍ଦ୍ଦେଶ ଦେଉଛି। ପ୍ରକୃତରେ "ଈଶ୍ୱର" ମନୁଷ୍ୟ ଦ୍ୱାରା ମନୁଷ୍ୟକୁ ଶୋଷଣ କରିବାପାଇଁ ଅନୁମତି ଦେଉଥିବା ଏକ ବଳିଷ୍ଠ ଏଜେନ୍ସି କହିଲେ ଭୁଲ ହେବନାହିଁ। ଏହା ମାନବୀୟ ସ୍ୱତନ୍ତ୍ରତା, ସମାନତା ଏବଂ ଭାଇଚାରାର ସମ୍ପୂର୍ଣ୍ଣ ପରିପନ୍ଥୀ। ଈଶ୍ୱର ହିଁ ମନୁଷ୍ୟର ଅଜ୍ଞାନତା ଓ ଅନ୍ଧବିଶ୍ୱାସର ପାଳନକର୍ତ୍ତା। ତେଣୁ ଆସ୍ତିକବାଦ ଆମ ପାଇଁ ସତରେ କେତେ ଲାଭଦାୟକ - ବିଚାର କରିବାର ସମୟ ଆସିଯାଇଛି।

*******

# ଧର୍ମର ପରିଭାଷା

ଧର୍ମର ପରିଭାଷା ଖୋଜିବା ସତରେ ଏକ କଷ୍ଟକର ବ୍ୟାପାର । ଦୁନିଆର ବିଭିନ୍ନ ଦେଶର ବିଭିନ୍ନ ଗଣମାନ୍ୟ ବିଦ୍ୱାନ ବ୍ୟକ୍ତି ଧର୍ମର ପରିଭାଷାକୁ ଅଲୌକିକ, ଦିବ୍ୟ ଏବଂ ପରାପ୍ରାକୃତିକ ତତ୍ତ୍ୱ ହିସାବରେ ବ୍ୟାଖ୍ୟା କରିଥା'ନ୍ତି । ସେମାନଙ୍କର ଏହି ଦୃଷ୍ଟିକୋଣ ସହିତ ଅଧିକାଂଶ ଲୋକ ସହମତି ପ୍ରକଟ କରିଥା'ନ୍ତି । ଅନ୍ୟକିଛି ବିଦ୍ୱାନଙ୍କ ମତରେ ଆଧ୍ୟାତ୍ମିକ ଅଥବା ଦିବ୍ୟତତ୍ତ୍ୱକୁ ମାନିବା ଏବଂ ତାହାକୁ ହିଁ ଜୀବନର ଆଦର୍ଶ ମାର୍ଗ ମାନିଚଳିବା, ଧର୍ମକୁ ଅନ୍ୟ ଗତିବିଧି ଠାରୁ ଭିନ୍ନତ୍ୱ ପ୍ରଦାନ କରୁଛି । ଆମେ ଏଇଠି ସେହିଭଳି ଭିନ୍ନମତ ପୋଷଣ କରୁଥିବା କିଛି ବିଦ୍ୱାନଙ୍କ ବିଚାର ଉଲ୍ଲେଖ କରୁଛୁ ।

"ଏନସାଇକ୍ଲୋପିଡିଆ ଅଫ୍ ରିଲିଜନ୍ସ" ପୁସ୍ତକରେ ଆର ବି ଟେଲର କହିଛନ୍ତି - "ଦିବ୍ୟ ଶକ୍ତିମାନଙ୍କର ଅସ୍ତିତ୍ୱ ଉପରେ ବିଶ୍ୱାସ କରିବା ହେଉଛି ଧର୍ମ ।" ଜେ କି ଫ୍ରେଜର କହିଛନ୍ତି - "ମୁଁ ଭାବୁଛି ମାନବ ଠାରୁ ଉଚ୍ଚ ଶକ୍ତି, ଯାହା ମାନବ ଏବଂ ପ୍ରାକୃତିକୁ ସଂଚାଳନ ଏବଂ ନିୟନ୍ତ୍ରଣ କରୁଛି, ତାକୁ ପ୍ରସନ୍ନ ରଖିବା ହେଉଛି ଧର୍ମ ।" ଡବ୍ଲୁ ୱାର୍ଡ ଫାଉଲର କହିଛନ୍ତି - "ବିଶ୍ୱରେ ବିକଶିତ ହେଉଥିବା ଶକ୍ତି ସପକ୍ଷରେ ରହିବାର ତୀବ୍ର ତଥା ପ୍ରଭାବପୂର୍ଣ୍ଣ ଇଚ୍ଛା ହିଁ ଧର୍ମ ।" ଶ୍ରୀ ଅରବିନ୍ଦ ଘୋଷ ଧର୍ମ ସଂପର୍କରେ ଏକ ସ୍ପଷ୍ଟ ମତ ଦେଇ କହିଛନ୍ତି । "ଧର୍ମର ଆତ୍ମା ହେଉଛି ଈଶ୍ୱରଙ୍କ ସନ୍ଧାନ ଏବଂ ପ୍ରାପ୍ତି । ଧର୍ମର ଆକାଂକ୍ଷା ହେଉଛି ସେହି ଅସୀମ, ଦିବ୍ୟ ବ୍ରହ୍ମକୁ ଖୋଜିବା, ଯାହା ସଂସାରରେ ବିଦ୍ୟମାନ ସମସ୍ତ ବସ୍ତୁ କଳ୍ପନା ମାତ୍ର ନୁହେଁ ବରଂ ଅସ୍ତିତ୍ୱକୁ ପ୍ରମାଣ କରୁଛି । ଧର୍ମ ଏକ ଏଭଳି ଜୀବନ ଶୈଳୀ ଯାହା ମାନବ ତଥା ବ୍ରହ୍ମର ସତ୍ତା ଏବଂ ଆତ୍ମୀୟ ସମ୍ବନ୍ଧ ଉପରେ ଆଧାରିତ । ଧର୍ମ ଏକ ଏଭଳି ସମ୍ବନ୍ଧ ଯାହା ଭିତରେ ଏକତ୍ୱ, ଭିନ୍ନତ୍ୱ, ପ୍ରକାଶିତ ଜ୍ଞାନ, ଅତ୍ୟୁଚ୍ଚ ପ୍ରେମ, ଆନନ୍ଦ, ସମ୍ପୂର୍ଣ୍ଣ ସମର୍ପଣ, ସେବା ମନୋବୃତ୍ତି ସହିତ ଆମର ଅସ୍ତିତ୍ୱର ପ୍ରତ୍ୟେକ ଭାଗର ସାମାନ୍ୟ ସ୍ଥିତି ଦ୍ୱାରା ମାନବର ଦିବ୍ୟତ୍ୱ ଦିଗରେ ପ୍ରଗତି ତଥା ଦିବ୍ୟ ତତ୍ତ୍ୱକୁ ମାନବ ଜୀବନରେ ଅବତରଣ କରୁଛି ।" (ଦି ହ୍ୟୁମେନ ସାୟକଲ ପୃ ୧୪୪) ।

ଇଂରେଜୀରେ ଧର୍ମକୁ ରିଲିଜନ କୁହାଯାଏ । ରିଲିଜନ ଅଥବା ଧର୍ମର ଶାବ୍ଦିକ ଅର୍ଥ ହେଉଛି ବନ୍ଧନ । ଧର୍ମକୁ ମାନୁଥିବା ଲୋକମାନେ ପରସ୍ପର ସହିତ ବାନ୍ଧି ହୋଇ ରହନ୍ତି । ଏଥିରେ ଆଦୌ ସନ୍ଦେହ ନାହିଁ ଯେ ଧର୍ମ ହିଁ ଲୋକମାନଙ୍କୁ ପରସ୍ପର ସହିତ ବାନ୍ଧି ରଖିପାରେ । ବିଶେଷ କରି ଯେତେବେଳେ ଅନ୍ୟ ଧର୍ମର ଲୋକମାନେ ଆକ୍ରମଣ କରନ୍ତି, ସେତେବେଳେ ଆହୁରି ବେଶୀ ଏହି ବନ୍ଧନର ଦୃଢତା ଦେଖିବାକୁ ମିଳିଥାଏ । ଆଜି ବିଶ୍ୱର ମାନବ ସମାଜ ବହୁ ଧର୍ମୀୟ ହୋଇଥିବାରୁ, ଧର୍ମର ବନ୍ଧନ ସ୍ପଷ୍ଟ ଭାବେ ପ୍ରମାଣିତ ହେଉଛି । ଧର୍ମର ଆଉ ଏକ ଉଦ୍ଦେଶ୍ୟ ହେଉଛି - ଭଗବାନଙ୍କ ଠାରୁ ଦୂରେଇ ଯାଉଥିବା ସନ୍ଦେହୀ ଭକ୍ତମାନଙ୍କୁ ଏକ ସୂତ୍ରରେ ବାନ୍ଧି ରଖିବା । ଏକ ଧର୍ମୀୟ ସମାଜରେ ଆମେ ଏହା ମୁଖ୍ୟତଃ ଦେଖିବାକୁ ପାଉ । ଧର୍ମର ବିଶେଷ କ୍ଷେତ୍ର ହେଉଛି ପାରଲୌକିକତା ଏବଂ ଅଲୌକିକତା । ସେଥିପାଇଁ ଆମେ ଦେଖିଛୁ - ସ୍ୱର୍ଗ, ନର୍କ, ଈଶ୍ୱର, ଦେବଦୂତ, ମୋକ୍ଷ, ପୁନର୍ଜନ୍ମ, ଆତ୍ମା, ପରମାତ୍ମା ଆଦି ସଂପର୍କରେ କେବଳ ଧର୍ମରେ ହିଁ ବେଶୀ ଚର୍ଚ୍ଚା ହୋଇଥାଏ । ଧାର୍ମିକ ପ୍ରବଚନରେ ବି ଈଶ୍ୱର, ଆତ୍ମା-ପରମାତ୍ମା, ପାପ, ପୂଣ୍ୟ, ସ୍ୱର୍ଗ, ନର୍କ, ମୋକ୍ଷ, ପୁନର୍ଜନ୍ମ ଆଦି ବିଷୟରେ ହିଁ ଚର୍ଚ୍ଚା ହୋଇଥାଏ । ଲୌକିକ ଜଗତର ମାନବୀୟ ଗୁଣ, ପ୍ରେମ, ଦୟା, କ୍ଷମା ଆଦିର ବିକାଶପାଇଁ ଯେଉଁ ଉପଦେଶ ଦିଆଯାଏ, ଯଥା : ମିଛ କୁହ ନାହିଁ, ସଦା ସତ୍ୟ କୁହ, ଚୋରି କର ନାହିଁ, ଅନ୍ୟ ପ୍ରତି ହିଂସା କରନାହିଁ, କାହାରି ମନରେ କଷ୍ଟ ଦିଅନାହିଁ, ଅସହାୟକୁ ସାହାଯ୍ୟ କର ଇତ୍ୟାଦି ଧାର୍ମିକ ପ୍ରବଚନ ଶ୍ରେଣୀରେ ଆସେ ନାହିଁ । କିନ୍ତୁ ଏହି ସବୁ ଉପଦେଶକୁ ଯଦି ଅନ୍ୟ ଏକ ଢଙ୍ଗରେ କୁହାଯିବ ଯଥା : ଚୋରି କଲେ ପାପ ହେବ, ଭଗବାନ ତୁମ୍ଭକୁ ଦଣ୍ଡ ଦେବ । ହିଂସା କଲେ ନର୍କକୁ ଯିବ, ତୁମ୍ଭକୁ ମୋକ୍ଷ ପ୍ରାପ୍ତ ହେବନାହିଁ । ତେବେ ଧାର୍ମିକ ଉଦ୍ଦେଶ୍ୟ ପୂରଣପାଇଁ ଏହି ପ୍ରବଚନକୁ ଧର୍ମର ଏକ ବାହ୍ୟ ଅଂଗ ରୂପେ ସ୍ୱୀକାର କରାଯାଏ ।

କେତେକ ଭାରତୀୟ ବିଦ୍ୱାନ କହନ୍ତି- ରିଲିଜନ ଏବଂ ଧର୍ମ ଏକା ବିଷୟ ନୁହେଁ । କାରଣ ରିଲିଜନ ପରଲୋକ କେନ୍ଦ୍ରୀତ ବିଚାର ଏବଂ ଧର୍ମ ଇହଲୋକ ଓ ପରଲୋକ ଉଭୟ କ୍ଷେତ୍ରର ବିଚାର । ଏହା ଏକପ୍ରକାର ସତକଥା ।

ବୈଶେଷିକ ସୂତ୍ର ୧.୧.୨ ଅନୁସାରେ "ଯତୋ ଅଭ୍ୟୁଦୟ ନିଃଶ୍ରେୟସଃ ସିଦ୍ଧିଃସ ଧର୍ମଃ"ଅର୍ଥାତ୍ ଧର୍ମ ହେଉଛି ସେହି ମାର୍ଗ ଯାହା ଦ୍ୱାରା ଆମକୁ ଏହି ଲୋକରେ ଉନ୍ନତି ଏବଂ ପରଲୋକରେ ମୋକ୍ଷ ପ୍ରାପ୍ତ ହେଉଛି।" ଆଉ କିଛି ବିଦ୍ୱାନଙ୍କ ମତରେ "ନିଜର କର୍ତ୍ତବ୍ୟହିଁ ଧର୍ମ, ନିଜର ସଂପ୍ରଦାୟ ସଂପର୍କରେ ତିଆରି ହୋଇଥିବା କର୍ତ୍ତବ୍ୟ ବିଧିର ସଂପାଦନକୁ ବି ଧର୍ମ କୁହାଯାଏ। ଅର୍ଥାତ ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଓ ଶୁଦ୍ରଙ୍କ ଧର୍ମ ବି ଅଲଗାଅଲଗା ହେବ। ମଣିଷର ବିଭିନ୍ନ ବୟସ ଅନୁସାରେ ବି ଧର୍ମ ଅଲଗା ହେବ ଯଥ : ବିଦ୍ୟାର୍ଥୀ ଧର୍ମ, ଗୃହସ୍ଥ ଧର୍ମ, ବାନପ୍ରସ୍ଥ ଧର୍ମ, ସନ୍ନ୍ୟାସୀ ମାନଙ୍କର ବି ଏକ ଅଲଗା ଧର୍ମ ଥାଏ।

ଆମେ ଦେଖୁଛୁ ଭାରତରେ ସର୍ବମାନ୍ୟ ଧର୍ମଗ୍ରନ୍ଥ ବୋଲି ଗୋଟିଏ ଧର୍ମଗ୍ରନ୍ଥ ନାହିଁ। ଅନେକ ଧର୍ମଗ୍ରନ୍ଥ ଥିବାରୁ, ସେଥିରେ ଧର୍ମ ବିଷୟରେ ବି ଅନେକ ମତ ପାର୍ଥକ୍ୟ ଦେଖିବାକୁ ମିଳୁଛି। କିଛି ପଣ୍ଡିତ କୁହନ୍ତି - "ମହାଭୂତରେ ସ୍ଥିତ ବିଭିନ୍ନ ପ୍ରାଣୀଙ୍କ ସ୍ୱଭାବ କିମ୍ବା ମୂଳ ପ୍ରବୃତ୍ତି ଧର୍ମ।"

ସେହିଭଳି ପ୍ରତ୍ୟେକ ପ୍ରାକୃତିକ ବସ୍ତୁର ଧର୍ମ ଅଲଗା। ପାଣିର ଧର୍ମଠାରୁ ନିଆଁର ଧର୍ମ ଅଲଗା। ବାଘ ଓ ସିଂହଙ୍କ ଧର୍ମ ଠାରୁ ଗାଈ ଓ ଛେଳିଙ୍କ ଧର୍ମ ଅଲଗା। କେତେକ ବିଦ୍ୱାନଙ୍କ ମତରେ ଯେଉଁ କାମ ଦ୍ୱାରା ସୁରକ୍ଷା ଓ ସଂରକ୍ଷଣ ମିଳିପାରୁଛି ସେହି କାମକୁ ସୁଚାରୁ ରୂପେ ସଂପାଦନ କରିବା ହେଉଛି ଧର୍ମ। ସମାଜର ବିଭିନ୍ନ ପଦବୀରେ ରହୁଥିବା ବ୍ୟକ୍ତିଙ୍କ ଧର୍ମ ବି ଅଲଗା। ଜଥା : ରାଜାଙ୍କ ଧର୍ମ, ପ୍ରଜାଙ୍କ ଧର୍ମ, ପତିର ଧର୍ମ, ପତ୍ନୀର ଧର୍ମ, ପିତା, ପୁତ୍ର, କନ୍ୟା, ଭାଇ, ଭଉଣୀ, ପଡୋଶୀଙ୍କ ଧର୍ମ କିମ୍ବା କର୍ତ୍ତବ୍ୟ ଅଲଗା ଅଲଗା।

ଧର୍ମର ଆହୁରି ଗୋଟିଏ ବିଭାଜନ ହେଉଛି "ସାଧାରଣ ଧର୍ମ ଏବଂ ଆପଦ୍ଧର୍ମ। ଜୀବନରେ ସବୁ କିଛି ସାମାନ୍ୟ ଢଙ୍ଗରେ ଚାଲୁଥିବା ବେଳେ ସାଧାରଣ ଧର୍ମ ପାଳନ କରିବା ସଂଭବ ଏବଂ ସହଜ ହୋଇଥାଏ। କିନ୍ତୁ ଜୀବନରେ ଯଦି କିଛି ଅବାଞ୍ଛିତ ପରିସ୍ଥିତି ଆସିଯାଏ ଏବଂ ସାଧାରଣ ଜୀବନଯାପନ କଷ୍ଟମୟ ହୋଇଯାଏ,

ସେତେବେଳେ ଆପଦ୍ଧର୍ମ ପାଳନ କରିବାକୁ ପାପ ଓ ଦୋଷ ବୋଲି କୁହାଯାଏ ନାହିଁ । ଉଦାହରଣ : ସାଧାରଣତଃ ବ୍ରାହ୍ମଣ ବା ପୂଜକ ସମାଜକୁ ମାଂସାହାର କରିବା ନିଷେଧ କରାଯାଇଛି କିନ୍ତୁ ଯଦି କେଉଁଠି ଅକାଳ ପଡିଯାଏ ଏବଂ ଶସ୍ୟ, ଫଳ ଆଦି ନମିଳିବ, ସେଇଠି ଜୀବନ ବଞ୍ଚେଇବା ପାଇଁ ଆମିଷ ଖାଇବା ଦୋଷ ନୁହେଁ । ସେମାନେ ପରେ ଅର୍ଥାତ୍ ପରିସ୍ଥିତି ସାମାନ୍ୟ ହୋଇଯିବା ପରେ ଧାର୍ମିକ ରୀତିରେ ପ୍ରାୟଶ୍ଚିତ କରିବାପାଇଁ ବି ନିର୍ଦ୍ଦେଶ ଦିଆଯାଇଛି । ଆମ ଦେଶରେ ବର୍ତ୍ତମାନ ଯୁଗରେ ପବିତ୍ର ନଦୀରେ ସ୍ନାନ କରି ପଣ୍ଡାମାନଙ୍କୁ ଦାନ ଦକ୍ଷିଣା ଦେଲେ ପାପ ମୁକ୍ତ ହୋଇ ସ୍ୱର୍ଗରେ ସ୍ଥାନ ଆରକ୍ଷଣ ହେଉଥିବା, କୌଣସି ତୀର୍ଥ ସ୍ଥାନକୁ ଯାତ୍ରା କରି ସେଇଠି ପୂଜା ଅର୍ଚ୍ଚନା କଲେ ସକଳ ସମସ୍ୟାରୁ ମୁକ୍ତି ମିଳୁଥିବା, ମନ୍ଦିର, ମସ୍‌ଜିଦ୍ ଓ ଚର୍ଚ୍ଚକୁ ଯାଇ ପ୍ରାର୍ଥନା କଲେ ପ୍ରତିଦିନ କରୁଥିବା ପାପ କର୍ମରୁ "ପାପ" କଟି ଯାଇ କେବଳ କର୍ମ ହିଁ ବାକି ରହୁଥିବା ଧର୍ମଗ୍ରନ୍ଥରେ ଲେଖାଥିବା ଭାଷା ଓ ଭାବ ବୁଝୁପଢୁ ବା ନପଢୁ (ବୁଝୁ ନବୁଝୁ ପଢ ଗୀତା) ପଢିଲେ ମନରେ କେବଳ ଆଧ୍ୟାତ୍ମିକ ଚେତନା ଜାଗ୍ରତ ରହିବା ଅନେକ (ଭିତ୍ତିହୀନ) ବିଶ୍ୱାସ ଓ କର୍ମକାଣ୍ଡକୁ କେନ୍ଦ୍ରରେ ରଖି ବିକଶିତ ହୋଇଥିବା ସାମୂହିକ ଜୀବନ ଶୈଳୀକୁ ସମସ୍ତେ ଧର୍ମ ବୋଲି କହୁଛନ୍ତି । ବାକି ସମସ୍ତ ଅର୍ଥ ଧର୍ମ ପାଇଁ ଗୌଣ ହୋଇଯାଇଛି । ଭାରତରେ ବି ବର୍ତ୍ତମାନ ଧର୍ମକୁ ରିଲିଜନ ଅର୍ଥାତ୍ ଦିବ୍ୟତ୍ୱର ପ୍ରାପ୍ତି ଅର୍ଥରେ ହିଁ ସମସ୍ତେ ବୁଝିଛନ୍ତି ।

ଦିବ୍ୟତ୍ୱ, ପାରଲୌକିକତା, ଆଧ୍ୟାତ୍ମ ଭଳି ବିଷୟକୁ କେନ୍ଦ୍ର ସ୍ଥାନରେ ରଖି ଆଦର୍ଶ ବିଚାର ବୋଲି ମାନିବା ଯୋଗୁଁ ଧାର୍ମିକ ବିଶ୍ୱାସ ସ୍ୱଅନୁଭୂତି ପରମ୍ପରା, ତୀର୍ଥ ଯାତ୍ରା, ଭାଷା, କର୍ତ୍ତବ୍ୟ ଓ ଆଦର୍ଶବାଦ ଆଦି ଧର୍ମନିରପେକ୍ଷ କ୍ଷେତ୍ରରେ ଥିବା ବିଶ୍ୱାସ ସ୍ୱଅନୁଭୂତି, ଭଷା, କର୍ତ୍ତବ୍ୟ, ପ୍ରଥା ଓ ଆଦର୍ଶବାଦଠାରୁ ସମ୍ପୂର୍ଣ୍ଣ ଭାବେ ଅଲଗା ଦେଖାଯିବ ।

ଧାର୍ମିକ ବିଶ୍ୱାସ ଏବଂ ଲୌକିକ ବିଶ୍ୱାସ ଭିତରେ ଥିବା ମୌଳିକ ପ୍ରଭେଦକୁ ଏକ ଛୋଟ ଉଦାହରଣରୁ ବୁଝିପାରିବା । ସକାଳ ହେଲେ ସୂର୍ଯ୍ୟ ଉଦୟ ହେବା, ସଂଧ୍ୟା ହେଲେ ସୂର୍ଯ୍ୟ ଅସ୍ତହେବା, ପୂର୍ଣ୍ଣିମା ଦିନ ରାତିରେ ଚନ୍ଦ୍ର ଦର୍ଶନ ନଦେବା,

ଋତୁ ପରିବର୍ତ୍ତନ ହେଲେ ଗ୍ରୀଷ୍ମ, ବର୍ଷା ଓ ଶୀତ ଅନୁଭବ କରିବା ଆଦି ପ୍ରାକୃତିକ ଘଟଣା ପୃଥିବୀ ଘୁରୁଥିବା କାରଣରୁ ଆପେ ଆପେ ହେଉଛି । ଏହା ହେଉଛି ପ୍ରାମାଣିକ ବିଜ୍ଞାନ ସିଦ୍ଧ ଲୌକିକ ବିଶ୍ୱାସ । ଏଥିରେ କାହାରି ସନ୍ଦେହ ନାହିଁ । କିନ୍ତୁ ଧାର୍ମିକ ବିଶ୍ୱାସ କହୁଛି ସୂର୍ଯ୍ୟ ଉଦୟ ହେବା, ଅସ୍ତ ହେବା, ଖରା, ବର୍ଷା ଓ ଶୀତ ଆସିବା ସବୁ କିଛି ଈଶ୍ୱରଙ୍କ ଇଚ୍ଛା ଅନୁସାରେ ମାନବଜାତିର ମଙ୍ଗଳପାଇଁ ହେଉଛି । ତେଣୁ ମଣିଷ ସେହିସବୁ ପ୍ରାକୃତିକ ଘଟଣା ପାଇଁ କୃତଜ୍ଞତା ପ୍ରକଟ କରି ଦେବତାମାନଙ୍କୁ ପୂଜା, ଅର୍ଚ୍ଚନା, ଆରାଧନା ଆଦି କରିବା ଉଚିତ୍ ।

ଉପରୋକ୍ତ ସମସ୍ତ ତର୍କ ବିତର୍କକୁ ମନରେ ରଖି ଶେଷରେ ଆମେ ଧର୍ମର ପରିଭାଷାକୁ ନିମ୍ନମତେ ପ୍ରକାଶ କରିପାରିବା । ଧର୍ମ ଏକ ଏଭଳି ପବିତ୍ର ମାର୍ଗ ଯାହା ବିଷୟରେ ଧର୍ମ ସଂସ୍ଥାପକମାନେ ଧର୍ମଗ୍ରନ୍ଥରେ ଲେଖିଯାଇଛନ୍ତି କିମ୍ବା କହି ଯାଇଛନ୍ତି ସେହି ମାର୍ଗକୁ ବିଶ୍ୱାସ କରି ଶ୍ରଦ୍ଧା ଓ ସମର୍ପଣ ଭାବେ ଯାତ୍ରା କଲେ ଧର୍ମ ସାଧକ ଏହି ଜଗତରେ ଲୌକିକ ଜୀବନର ଲାଭ ପାଇବା ସହିତ ପାରଲୌକିକ ଜଗତର ଦିବ୍ୟ ମୋକ୍ଷ ବି ପ୍ରାପ୍ତ କରିପାରିବ । ଧର୍ମ ଜୀବନର ସମସ୍ତ ଅବସ୍ଥାକୁ ସମ୍ମନ୍ୱିତ କରୁଥିବା ଜୀବନଶୈଳୀ ବି ହୋଇପାରେ । ବ୍ୟକ୍ତିଗତ ହେଉ ବା ସାମାଜିକ, ଲୌକିକ ହେଉ ବା ପାରଲୌକିକ, ଭୂତକାଳୀନ ହେଉ, ବର୍ତ୍ତମାନ ଅଥବା ଭବିଷ୍ୟତ କାଳୀନ ହେଉ, କୌଣସି ବିଷୟ ଧର୍ମ ଆଖିରେ ଲୁଚି ରହି ପାରିବନାହିଁ । ଗୋଟିଏ ସଚ୍ଚୋଟ ଧାର୍ମିକ ବ୍ୟକ୍ତିପାଇଁ ଜୀବନର ପ୍ରତ୍ୟେକଟି କ୍ଷେତ୍ର ଧର୍ମ କ୍ଷେତ୍ର ହେବା ଆବଶ୍ୟକ । ତା' ଜୀବନର ସୁଖଦ ଘଟଣା ହେଉ ଅଥବା ଦୁଃଖଦ, ସାମାନ୍ୟ ଘଟଣା ହେଉ ଅଥବା ଚମତ୍କାରୀ ପ୍ରତ୍ୟେକ ଛୋଟ, ବଡ ଘଟଣା ତା' ଦୃଷ୍ଟିରେ ବିଶ୍ୱକୁ ନିୟନ୍ତ୍ରିତ କରୁଥିବା ଦିବ୍ୟ ଶକ୍ତି ଦ୍ୱାରା ନିୟୋଜିତ ହୋଇଥାଏ ।

ବିଡମ୍ବନା ହେଉଛି ଯେ ଆଜିର ଯୁଗରେ ଏକ ସଚ୍ଚୋଟ ଧାର୍ମିକ ବ୍ୟକ୍ତି କିଏ ? ଚିହ୍ନିବା ଓ ଜାଣିବା ଅସମ୍ଭବ ହୋଇପଡିଛି । କୌଣସି ବ୍ୟକ୍ତି ତା'ର ସତ୍ଆଚରଣ ଓ ଧର୍ମୀୟ ଜୀବନ ଶୈଳୀ ଯୋଗୁଁ କିଛି ଲୋକଙ୍କୁ କିଛିଦିନ ପାଇଁ ପ୍ରଭାବିତ କରୁଥିଲେ

ବି ହଠାତ୍ ଦିନେ ତା'ର ଅସଲ ଘୃଣ୍ୟ ଆଚରଣ ଓ ଧର୍ମୀୟ ପ୍ରବଞ୍ଚନା ଜନସାଧାରଣ ଜାଣିପାରୁଛନ୍ତି । ସେଇଠି ପ୍ରଶ୍ନଉଠୁଛି - ଯଦି ଧର୍ମ ନାମରେ କିଛି ଧୂର୍ତ୍ତ ଲୋକ ସାଧାରଣ ଲୋକମାନଙ୍କୁ ଠକିବାରେ ସକ୍ଷମ ହୋଇପାରନ୍ତି, ତେବେ ଧର୍ମର ପରାକାଷ୍ଠା କେଉଁଠି ? ଲୌକିକ ଜଗତରେ ଯଦି ତଥାକଥିତ ଧର୍ମ ମଣିଷ ଭିତରେ ଦୟା, କ୍ଷମା, ପ୍ରେମ, ତ୍ୟାଗ, ନୈତିକତା ଓ ମାନବିକତା ଜାଗ୍ରତ କରିପାରୁନି; ତେବେ ପାରଲୌକିକ ଜଗତରେ ମୋକ୍ଷ, ସ୍ୱର୍ଗ ଆଦି ପ୍ରାପ୍ତିର ବିଶ୍ୱାସ କେତେଦୂର ସତ ହୋଇପାରେ ?

*******

# ନୈତିକତାର ପ୍ରେରଣା କେଉଁଠୁ ମିଳେ

ଆଜିର ସମାଜରେ ବ୍ୟାପ୍ତ ଅନୈତିକ କର୍ମ, ବ୍ୟଭିଚାର ଆଦି ପାଇଁ ଜଣେ ଧର୍ମାନ୍ଧ ବ୍ୟକ୍ତି ମତ ଦେଲେ ଯେ ଏଗୁଡିକ ଘଟୁଛି କେବଳ କିଛି ନଷ୍ଟ ଚରିତ୍ର ଲୋକମାନଙ୍କ ଯୋଗୁଁ। ସେମାନେ ହିନ୍ଦୁ ଧର୍ମଶାସ୍ତ୍ରକୁ ମାନୁନାହାଁନ୍ତି, ଆଧ୍ୟାତ୍ମିକ ଚିନ୍ତନଠାରୁ ଦୂରେଇ ରହୁଛନ୍ତି। ସେଥିପାଇଁ ସେମାନଙ୍କ ଭିତରେ ନୈତିକତାର ବିକାଶ ହୋଇପାରୁନାହିଁ।

ତାଙ୍କର ଏହି ମତ ସହ ମୁଁ ସଂପୂର୍ଣ୍ଣ ଭାବେ ସହମତ ହୋଇପାରିଲି ନାହିଁ। ଏହା ସତ କଥା ଯେ ଅନୈତିକ ପ୍ରବୃତ୍ତି ହିଁ ମଣିଷର ଚରିତ୍ରକୁ ନଷ୍ଟ କରିଦିଏ। କିନ୍ତୁ ଆଧ୍ୟାତ୍ମିକ ଚିନ୍ତନ ହିଁ ମଣିଷ ଭିତରେ ନୈତିକତା ଜାଗ୍ରତ କରିବାପାଇଁ ଏକମାତ୍ର ଉପାୟ, ଏହା ସତ୍ୟ ନୁହେଁ। ଧର୍ମଶାସ୍ତ୍ର ନ ପଢି, ଆଧ୍ୟାତ୍ମିକ ଚିନ୍ତନ ବିନା ବି ମଣିଷ ଏକ ସତ୍‌ଚରିତ୍ର, ନିଷ୍ଠାବାନ୍, ନୀତିବାନ, ଦୟାବାନ୍ ବ୍ୟକ୍ତି ହୋଇପାରେ। ନୈତିକତା ସହିତ ଆଧ୍ୟାତ୍ମବାଦର କୌଣସି ସିଧା ସମ୍ବନ୍ଧ ନାହିଁ।

ମୁଁ ତାଙ୍କୁ ପ୍ରଶ୍ନ କଲି - ସତରେ କଅଣ ଆପଣ ଭାବୁଛନ୍ତି ଆମ ଧର୍ମଶାସ୍ତ୍ରଗୁଡିକରେ ଅନୈତିକ କର୍ମ ଏବଂ ବ୍ୟଭିଚାର ଆଦିର ପ୍ରସଂଗ ନାହିଁ ?

ସେ ତାଙ୍କର ପକ୍ଷ ସମର୍ଥନ କରିବାକୁ ଯାଇଁ ଉତ୍ତର ଦେଲେ - ହଁ ଥାଇପାରେ। କିନ୍ତୁ ମୂଳଗ୍ରନ୍ଥମାନଙ୍କରେ ଉଲ୍ଲେଖଥିବା କିଛି ପ୍ରସଂଗକୁ କିଛି ଲେଖକ ଅନର୍ଥ କରି ଲେଖି ଦେଇଥିବାରୁ ପ୍ରସଙ୍ଗଗୁଡିକ ଅସଂଗତ ଲାଗୁଛି।

ମୁଁ କହିଲି - ଆପଣଙ୍କ କଥା ଯଦି ସତ ହୋଇଥାଏ, ଏଇଠି ପ୍ରଶ୍ନ ଉଠୁଛି ଯେ ଧର୍ମଗ୍ରନ୍ଥକୁ ଅନୁବାଦ କିମ୍ବା ବ୍ୟାଖ୍ୟା କରି ଯେଉଁ ପଣ୍ଡିତମାନେ ନୂଆଗ୍ରନ୍ଥ ରଚନା କରିଛନ୍ତି, ସେମାନେ କଅଣ ନାସ୍ତିକ ଥିଲେ ? ମୁଁ ଜାଣିବାରେ ସେମାନେ ସମସ୍ତେ ଆସ୍ତିକ ଥିଲେ। ଧର୍ମଶାସ୍ତ୍ରଗୁଡିକୁ ସମାଲୋଚନା ଓ ତର୍କରୁ ଊର୍ଦ୍ଧ୍ୱରେ ରଖିବାପାଇଁ ସେମାନେ ସର୍ବଦା ଚେଷ୍ଟା କରିଛନ୍ତି। ବରଂ ତର୍କ ସଂଗତ କରିବାପାଇଁ ଶ୍ଳୋକଗୁଡିକର

ବିଭିନ୍ନ ଅର୍ଥ ସଂପାଦନ କରିଛନ୍ତି । ଏପରିକି ଧାର୍ମିକ ତଥ୍ୟଗୁଡିକ ବି ବିଜ୍ଞାନ ସମ୍ମତ ବୋଲି ଯୁକ୍ତି କରୁଛନ୍ତି ।

ଧର୍ମଗ୍ରନ୍ଥମାନଙ୍କରେ ଲେଖାଥିବା ପ୍ରସଂଗଗୁଡିକରେ ରହିଥିବା ଅନେକ ଅନୈତିକ କର୍ମ ଓ ବ୍ୟଭିଚାର ସଂପର୍କରେ ଆମେ ଯେତେ ଘଣ୍ଟ ଘୋଡେଇବାକୁ ଚେଷ୍ଟାକଲେ ବି ସତକଥାକୁ ସମସ୍ତଙ୍କ ଦୃଷ୍ଟିରୁ ଲୁଚେଇ ହେଉନାହିଁ ।

ଇତିହାସ ପୃଷ୍ଠାରୁ ନିମ୍ନଲିଖିତ ଘଟଣାଟି ଦ୍ରଷ୍ଟବ୍ୟ । ସମ୍ରାଟ୍ ଆକବର ଯୋଧାବାଇଙ୍କୁ ବିବାହ କଲାପରେ ହିନ୍ଦୁ ଧର୍ମ ଓ ହିନ୍ଦୁ ଧର୍ମଶାସ୍ତ୍ରକୁ ଉଚିତ ସମ୍ମାନ ଦେଉଥିଲେ । ହିନ୍ଦୁଧର୍ମର ମହାଗ୍ରନ୍ଥ ମହାଭାରତ ସଂପର୍କରେ ହିନ୍ଦୁ ପଣ୍ଡିତମାନଙ୍କଠାରୁ ପ୍ରଶଂସା ଶୁଣି ରାଜା ରାଜଦରବାରର ଫାରସି ପଣ୍ଡିତମାନଙ୍କୁ ଆଦେଶ ଦେଲେ ସଂପୂର୍ଣ୍ଣ ମହାଭାରତ ଗ୍ରନ୍ଥକୁ ପଢି, ଫାରସି ଭାଷାରେ ଅନୁବାଦ କରାଯାଉ । କିଛିଦିନ ପରେ ରାଜା ସେହି ପଣ୍ଡିତମାନଙ୍କୁ ଡାକି ମହାଭାରତର ଅନୁବାଦ ସଂପର୍କରେ ଜାଣିବାକୁ ଚାହିଁଲେ । ରାଜା ପ୍ରଶ୍ନ କଲେ - ମହାଭାରତରେ ଲିଖିତ ବିଷୟବସ୍ତୁ କେମିତି ଲାଗୁଛି ? ପଣ୍ଡିତମାନେ ଡରିଡରି ଉତ୍ତର ଦେଲେ - "କ୍ଷମା କରିବେ ମହାରାଜ, ବାକି ସବୁ ତ ଠିକ ଅଛି କିନ୍ତୁ ଏହି ଗ୍ରନ୍ଥର ମହାନାୟକ ଓ ନାୟକମାନେ କେହି ବି "ହଲାଲ୍ ଯାଦା" (ବୈଧସଂତାନ) ନୁହଁନ୍ତି । ସମସ୍ତେ ଅପ୍ରାକୃତିକ ଓ ଅବୈଧ ରୂପେ ଜନ୍ମଗ୍ରହଣ କରିଛନ୍ତି ।"

ଫାରସି ବିଦ୍ୱାନମାନଙ୍କ ଉପରୋକ୍ତ ମନ୍ତବ୍ୟ ମିଛ ବି ନୁହେଁ । କାରଣ ମହାଭାରତର ଅଧିକାଂଶ ପାତ୍ର ନିୟୋଗ ପ୍ରଥାର ସାମାଜିକ ପ୍ରଚଳନ ଯୋଗୁଁ ଜନ୍ମ ହୋଇଛନ୍ତି କିମ୍ବା ସ୍ୱଚ୍ଛନ୍ଦ ବଳାତ୍କାର ଯୋଗୁଁ ଜନ୍ମ ହୋଇଛନ୍ତି । ଧୃତରାଷ୍ଟ୍ର, ପାଣ୍ଡୁ ଏବଂ ବିଦୁର ତିନି ଭାଇ ବିଚିତ୍ରବୀର୍ଯ୍ୟଙ୍କ ସ୍ତ୍ରୀ ଓ ବ୍ୟାସଙ୍କ ଔରସରୁ ଜନ୍ମ ହୋଇଛନ୍ତି । ଅନ୍ଧ ଧୃତରାଷ୍ଟ୍ରଙ୍କ ଏକଶହ ପୁତ୍ର ପ୍ରାକୃତିକ ଭାବେ ଜନ୍ମ ହୋଇନାହାଁନ୍ତି । ରାଣୀ ଗାନ୍ଧାରୀ ଅସନ୍ତୁଷ୍ଟ ହୋଇ ନିଜ ଗର୍ଭକୁ ଆଘାତ କରି କରି ଗୋଟିଏ ପିଣ୍ଡ ଆକାରରେ ଯୋନୀ ମାର୍ଗରେ ବାହାରକୁ ଫିଙ୍ଗି ଦେଇଥିଲେ । ଆଘାତ ପାଇ ପିଣ୍ଡ ଭିତରେ ଗର୍ଭସ୍ଥ ଶିଶୁଟି

ଶତଖଣ୍ଡ ହୋଇଗଲା । ଏହିଭଳି ଜଟୀଳ ପରିସ୍ଥିତିର ସମାଧାନପାଇଁ ବ୍ୟାସଙ୍କୁ ଡକରା ପଡିଲା । ବ୍ୟାସ ଏକ ଶହ ଏକ ପାତ୍ରରେ ଗୋଟିଏ ଲେଖାଏଁ ଖଣ୍ଡକୁ ସୁରକ୍ଷିତ କଲେ । ସେମାନଙ୍କ ମଧ୍ୟରୁ ଏକଶକ ପୁତ୍ର ଏବଂ ଗୋଟିଏ କନ୍ୟା ଜାତ ହେଲେ । (କେତେ ସମୟ୍ ଓ କିଭଳି ପ୍ରକ୍ରିୟାରେ ସେମାନେ ଜନ୍ମ ହେଲେ, ତାହା ଅଜ୍ଞାତ) କନ୍ୟାଟିର ନାମ ଥିଲା "ଦୁଶାଲା" । ପୁଅମାନଙ୍କ ନାମ ଦୁର୍ଯ୍ୟୋଧନ, ଦୁଃଶାସନ...... ଆଦି ରଖାଗଲା ।

ପାଣ୍ଡବମାନଙ୍କ ଜନ୍ମ ବୃତ୍ତାନ୍ତ ବି କିଛି କମ୍ ବିଚିତ୍ର ନୁହେଁ । କୁନ୍ତୀଙ୍କର ପ୍ରଥମ ସନ୍ତାନ ନାବାଳିକା ବୟସରେ କାନବାଟ ଦେଇ ଜନ୍ମ ହୋଇଛନ୍ତି । ପରବର୍ତ୍ତୀ ପାଞ୍ଚଜଣଙ୍କ ମଧ୍ୟରୁ କେହି ବି ରାଜା ପାଣ୍ଡୁଙ୍କ ସନ୍ତାନ ନୁହଁନ୍ତି । ପାଞ୍ଚଜଣ ବିଭିନ୍ନ ଦେବତାଙ୍କ ଔରସରୁ ଜାତ ହୋଇଛନ୍ତି । ସେହିଭଳି ଦ୍ରୋଣାଚାର୍ଯ୍ୟ ଗୋଟିଏ ପତ୍ରଦାନାରେ ପଡିଥିବା ବୀର୍ଯ୍ୟରୁ ଅପ୍ରାକୃତ ଭାବେ ଜନ୍ମ ହୋଇଛନ୍ତି ।

ଆଜିର ଯୁଗରେ ଆମେ ମହାଭାରତରଏହି ପ୍ରଥାଗୁଡିକୁ ଆଦର୍ଶ କହି ସମାଜରେ ମାନି ଚଳି ପାରିବା କି ? ଆମର ପୁଞ୍ଜିବାଦୀ ପରମ୍ପରାକୁ ବଞ୍ଚେଇ ରଖିବାପାଇଁ ଧର୍ମଗୁରୁମାନେ ପ୍ରବଚନ ମାଧ୍ୟମରେ ମହାଭାରତର କେତେକ ନୈତିକ ପକ୍ଷକୁ ଶୁଣେଇ ଦାବି କରୁଛନ୍ତି ଯେ ମହାଭାରତକୁ ମାନି ଚଳିଲେ ନୈତିକତାର ବିକାଶ ହେବ ।

ଧାର୍ମିକ ବ୍ୟାଖ୍ୟାକାର ସ୍ୱାମୀ ସତ୍ୟଭକ୍ତ କହିଛନ୍ତି - "ବ୍ୟଭିଚାର ଏବଂ ବିଳାସିତା ଦୁନିଆର ପ୍ରତ୍ୟେକ ସ୍ଥାନରେ ଅଛି । କିନ୍ତୁ ବ୍ୟଭିଚାର ଓ ବିଳାସିତାକୁ ଏକ ମାନବୀୟ୍ ଦୁର୍ବଳତା ଓ ମାନସିକ ରୋଗ ହିସାବରେ ଏହାର ଉପଚାରପାଇଁ ଉପାୟ୍ ଖୋଜିବା ଆବଶ୍ୟକ । ଏହା ଏକ ଲଜ୍ଜାଜନକ କର୍ମ ବୋଲି ଘୃଣାକରିବା ଉଚିତ୍ । କିନ୍ତୁ ଏହି କର୍ମଗୁଡିକୁ ଧାର୍ମିକ ରଂଗ ଦେଇ ଚିତ୍ରଣ କରିବା, ଏହା ପରମାତ୍ମଙ୍କ ଲୀଳା କହି ବର୍ଣ୍ଣନା କରିବା ରାଧାକୃଷ୍ଣଙ୍କ ରାସଲୀଳା ଭଳି ନାଟକ ପ୍ରସ୍ତୁତ କରି ବ୍ୟଭିଚାରକୁ ସମର୍ଥନ କରିବା କେବଳ ଭାରତ ଭୂମିରେ ହିଁ ସମ୍ଭବ ହୋଇଥାଏ ।

ସେ ଆହୁରି କହିଛନ୍ତି - "ଲୈଲା ମଜନୁ, ଶିରୀ ଫରହାଦଙ୍କ ଭଳି ପ୍ରେମ କାହାଣୀ ପଶ୍ଚିମ ଏସିଆରେ ବି ଅଛି । କିନ୍ତୁ ସେଠାରେ ମଜନୁ କିମ୍ବା ଫର୍ହାଦଙ୍କୁ ଦେବତା ରୂପେ ମାନ୍ୟତା ଦିଆଯାଇନାହିଁ । ଅବିବାହିତ ପ୍ରେମୀ ଯୁଗଳ ରାଧା ଓ କୃଷ୍ଣଙ୍କୁ ଭାରତରେ ଗୌରବର ସହିତ ଦେବତା ମାନି ପୂଜା କରାଯାଉଛି । ସାଧୁ, ସନ୍ୟାସୀ ଭଳି ବୈରାଗୀମାନେ ରାଧେକୃଷ୍ଣ, ରାଧେକୃଷ୍ଣ କହି ମାଳା ଗଡଉଛନ୍ତି ।

ଆଜିକାଲି ସେହିମାନେ ହିଁ ଭେଲେଣ୍ଟାଇନ୍ ଡେ ଓ ଲିଭ୍-ଇନ୍-ରିଲେସନ୍ସିପ୍‌କୁ ତୀବ୍ର ପ୍ରତିବାଦ କରୁଛନ୍ତି ।

ଆମ ଦେଶରେ ହିଁ ହିନ୍ଦୁ ମନ୍ଦିରମାନଙ୍କ କାନ୍ଥରେ କାମଶାସ୍ତ୍ର ବର୍ଣ୍ଣିତ ଯୌନ ସଂଗମର ଚୌରାଶି ଆସନର ମୂର୍ତ୍ତି ତିଆରି ହୋଇଛି । ଶିବ ମନ୍ଦିର ଭିତରେ ଲିଙ୍ଗ ଓ ଯୋନୀର ସାଂକେତିକ ସ୍ୱରୂପକୁ ପୂଜା କରିବାପାଇଁ ଲମ୍ବା ଧାଡି ଲାଗିଥାଏ । ସେଇଠି କାହାକୁ ଲଜ୍ଜା ଲାଗେନାହିଁ ।

ଆମରି ଦେଶରେ ଦିଗମ୍ବର ଜୈନମୁନିମାନେ ଲଙ୍ଗଳା ହୋଇ ଜୀବନ୍ତ ଅଶ୍ଳୀଳ ପ୍ରଦର୍ଶନ କରି [illegible] ବୁଲୁଛନ୍ତି । ଘରଦ୍ୱାର ଆଗରେ ଠିଆ ହୋଇ [illegible]ମାନଙ୍କ [illegible] । [illegible]ମାନଙ୍କୁ [illegible] ଲାଗୁନାହିଁ କି ?

ଏହିଭଳି [illegible] ଯୌନ ସଂସର୍ଗ, [illegible] ନିୟନ୍ତ୍ରଣ [illegible] ପ୍ର[illegible]ପାରିବ କି ?

ଆମର ପୁରାଣଗୁଡିକରେ [illegible] ଅବିଶ୍ୱାସନୀୟ, ବିଭତ୍ସ କାହାଣୀ [illegible] ଅଛି, [illegible] ଯୌନ [illegible] ସମାଜ ଆଗରେ [illegible] କରି ହେବନାହିଁ । ତଥାପି ଆମର [illegible] ଲୋକମାନେ ବିଶ୍ୱାସ କରୁଛନ୍ତି ଏବଂ ଅନ୍ୟମାନଙ୍କୁ ବିଶ୍ୱାସ କରିବାପାଇଁ ପ୍ରବର୍ତ୍ତାଉଛନ୍ତି । ବୈଜ୍ଞାନିକମାନେ ଆବିଷ୍କାର ଓ ଉଦ୍ଭାବନ କରିଥିବା ସମସ୍ତପ୍ରକାର ଭୋଗବିଳାସର ସାଧନକୁ ବିନା ଦ୍ୱିଧାରେ ଉପଭୋଗ କରୁଥିବା କୃତଘ୍ନ ମଣିଷମାନେ ବୈଜ୍ଞାନିକମାନଙ୍କୁ ନାସ୍ତିକ କହି ହେୟ ଦୃଷ୍ଟିରେ ଦେଖୁଛନ୍ତି । ସବୁକିଛି ପରମାତ୍ମାଙ୍କ ଲୀଳା କହି ନିଜକୁ ଠକୁଛନ୍ତି ।

ଅନ୍ୟାନ୍ୟ ଦେଶରେ ସତ୍‌ଚରିତ ବ୍ୟକ୍ତିଙ୍କୁ ଶ୍ରେଷ୍ଠ ବା ଧର୍ମାତ୍ମା ବୋଲି ମାନୁଛନ୍ତି। କିନ୍ତୁ ଆମ ଦେଶରେ ଭଣ୍ଡ ସାଧୁବେଶଧାରୀ କାମାନ୍ଧ, ଦୁରାଚାରୀ ଓ ବ୍ୟଭିଚାରୀ ଲୋକମାନଙ୍କୁ ଧର୍ମାତ୍ମା ବୋଲି ପୂଜା କରାଯାଏ। କାରଣ ସେମାନେ ଲୋକଦେଖାଣିଆ ଧାର୍ମିକ କର୍ମକାଣ୍ଡକୁ ସୁଚାରୁରୂପେ ସଂପନ୍ନ କରିଥା'ନ୍ତି।

ଆମର ଧର୍ମଗୁରୁମାନେ ଶତ ପ୍ରତିଶତ ଗ୍ୟାରେଣ୍ଟି ଦେଇ କୁହନ୍ତି ଯେ ଗୋଟିଏ ଜନ୍ମରେ ହେଉ ବା ସାତ ଜନ୍ମରେ, ନିଜେ କରିଥିବା ପାପ ମଧ୍ୟ ଠିକ୍ ପଦ୍ଧତିରେ ଭଗବାନଙ୍କୁ ପୂଜା କଲେ ଧୋଇ ହୋଇଯାଏ। ଯେକୌଣସି ତୀର୍ଥସ୍ଥାନକୁ ଯାଇ, ନଦୀରେ ବୁଡ ପକେଇ, ବ୍ରାହ୍ମଣଙ୍କୁ ଦାନ ଦକ୍ଷିଣା ଦେଲେ ପାପ କ୍ଷୟ ହୋଇଯାଏ। ତେବେ ଆଉ ଭୟ ରହିବ କାହିଁକି ? ଯେତେ ବଡ ଦୋଷ କଲେ ବି ଯଦି ଦଣ୍ଡ ବଦଳରେ କ୍ଷମା ମିଳିଯିବାର ଗ୍ୟାରେଣ୍ଟି ମିଳୁଛି, ସେପରି ଧର୍ମକୁ କିଏ ବା ନ ମାନିବ ? ସଚ୍ଚରିତ୍ର ଗଠନ କରିବାପାଇଁ କଠୋର ସାଧନା କରିବା କଅଣ ଆବଶ୍ୟକ ?

ଏହି କାରଣରୁ [illegible] କୋଟି କୋଟି ଜନତା ପୂଜା, ପ୍ରାର୍ଥନା, ତୀର୍ଥଯାତ୍ରା, [illegible] ଓ ସାଧୁସନ୍ୟାସୀଙ୍କ ବିରୁଦ୍ଧରେ କିଛି ବି ଶୁଣିବାକୁ [illegible] ନାହିଁ। [illegible] ଅପକର୍ମ କଲେ ମଧ୍ୟ ଅପରାଧ ବୋଧରୁ ସହଜରେ ମୁକ୍ତି ଦିଆଯାଉଥିବା ଧାର୍ମିକ ପଦ୍ଧତିକୁ [illegible] କରି କିଏ ବା ଚାହିଁବ [illegible] ହାତରେ ଧରାପଡି କୋର୍ଟ [illegible] ? [illegible] କୋର୍ଟରେ [illegible] ପାର୍ଥ [illegible] ନା [illegible], କ୍ଷମା ମିଳିବାର ସଂଭାବନା ବି ନଥାଏ।

[illegible], ଖାଦ୍ୟ ପଦାର୍ଥରେ ଅପମିଶ୍ରଣ କରୁଛନ୍ତି, ଚିଟ୍ ଫଣ୍ଡ ଖୋଲି ଜନତାଙ୍କୁ ବୋକା ବନଉଛନ୍ତି, ପ୍ରଲୋଭନ ଦେଖେଇ ନାରୀଙ୍କ ଯୌନଶୋଷଣ କରୁଛନ୍ତି, ସେମାନେ ଜାଣିଛନ୍ତି ଯେ ସେମାନଙ୍କର କଥିତ ଦେବତାମାନେ ମଧ୍ୟ ସେହିଭଳି ଚରିତ୍ରର ଦେବତା। କୌଣସି ଅପକର୍ମ କରିବା ପୂର୍ବରୁ କିମ୍ବା ପରେ ନିଜର ଇଷ୍ଟଦେବତାଙ୍କୁ ସ୍ମରଣ କଲେ ସେ ଖୁସି ହୋଇ ତାଙ୍କର ସବୁଦୋଷ କ୍ଷମା କରିଦେବେ ବୋଲି ଗଭୀର ବିଶ୍ୱାସ ରଖୁଛନ୍ତି। ଯେଉଁ ଦେଶରେ

ଦୋଷପାଇଁ ଦଣ୍ଡ ନୁହେଁ କେବଳ କ୍ଷମା ବା ମୋକ୍ଷ ମିଳିଯିବାର ଅଦ୍ଭୁତ ବ୍ୟବସ୍ଥା ରହିଛି, ସେ ଦେଶର ନାଗରିକ ନୈତିକତା ରକ୍ଷା କରିବା ଏବଂ ଚରିତ୍ରକୁ ପବିତ୍ର ରଖିବା ଆବଶ୍ୟକ କଅଣ ?

ଭାରତୀୟ୍ କାନୁନ୍ ବ୍ୟବସ୍ଥାରେ ଯେଉଁ କର୍ମକୁ ଅପରାଧ ଘୋଷଣା କରି ଦଣ୍ଡବ୍ୟବସ୍ଥା କରାଯାଇଛି, ଭାତତୀୟ୍ ଧାର୍ମିକ ବ୍ୟବସ୍ଥାରେ ସେହିଭଳି କର୍ମକୁ ପୂଣ୍ୟକର୍ମ ଏବଂ କ୍ଷମଣୀୟ୍ ବୋଲି ପ୍ରଚାର କରାଯାଉଛି । ନିମ୍ନରେ କିଛି ଉଦାହରଣ ଦେଖନ୍ତୁ -

(କ) ଦାସତ୍ୱ ବା ଦାସ ପ୍ରଥା :- ବ୍ୟକ୍ତିର ଇଚ୍ଛା ବିରୁଦ୍ଧରେ ଉଚିତ୍ ପାରିଶ୍ରମିକ ନଦେଇ ମାଲିକର ଅଧୀନରେ କାମ କରେଇବା ଆଇନତଃ ଅପରାଧ । କିନ୍ତୁ କୌଣସି ବ୍ୟକ୍ତି ସେହିଭଳି ସେବା କାମ କୌଣସି ସାଧୁ କିମ୍ବା ମଠ ଓ ମନ୍ଦିରପାଇଁ କଲେ ଦୋଷ ନୁହେଁ, ପୂଣ୍ୟ କର୍ମ ରୂପେ ବିଚାର କରାଯାଏ ।

(ଖ) ଦେବଦାସୀ :- ଯେକୌଣସି ବୟସର ନାରୀକୁ ଜବରଦସ୍ତି କିମ୍ବା ଫୁସୁଲେଇ ଯୌନାଚାର କଲେ ଆଇନତଃ ଅପରାଧ । କିନ୍ତୁ ଅଳ୍ପବୟସରୁ ହିଁ କୌଣସି ଦେବତାଙ୍କୁ କାଳ୍ପନିକ ସ୍ୱାମୀଭାବେ ବିବାହ କରି ମଠ ଓ ମନ୍ଦିରରେ ରହିବାକୁ ବାଧ୍ୟ କରାଯାଉଥିବା ନାରୀପାଇଁ ପୂଣ୍ୟର କାମ ଏବଂ ସେମାନଙ୍କର ଯୌନ ଶୋଷଣ କରୁଥିବା ସାଧୁ, ମହନ୍ତ ଓ ଦଲାଲମାନେ ନିର୍ଦ୍ଦୋଷ ବୋଲି ଅନୁଭବ କରୁଛନ୍ତି ।

(ଗ) ନିଶାଦ୍ରବ୍ୟ :- ପ୍ରତିବନ୍ଧିତ ନିଶାଦ୍ରବ୍ୟର ଅବୈଧ ବ୍ୟାପାର କରିବା ଆଇନତଃ ଅପରାଧ । କିନ୍ତୁ ଗଞ୍ଜେଇ, ଚରସ, ଅଫିମ, ମଦ ଏବଂ ବିଦେଶୀ ଡ୍ରଗ୍ସ ସେବନ କରୁଥିବା ଓ ବ୍ୟାପାର କରୁଥିବା ଭଣ୍ଡ ସାଧୁସନ୍ୟାସୀମାନଙ୍କୁ କେହି ସହଜରେ ଧରିପାରନ୍ତି ନାହିଁ । ଶିବ ମନ୍ଦିର ଭିତରେ ଗଞ୍ଜେଇ ସେବନ ଏକ ପ୍ରକାର ଧର୍ମସମ୍ମତ ପୂଣ୍ୟକର୍ମ ବୋଲି ସେମାନେ ଭାବନ୍ତି ।

(ଘ) ନରବଳୀ :- ଯେକୌଣସି କାରଣରୁ ହେଉ ମଣିଷକୁ ହତ୍ୟା କରିବା ଆଇନତଃ ଏକ ଜଘନ୍ୟ ଅପରାଧ । କିନ୍ତୁ ମନ୍ତ୍ର ସିଦ୍ଧି ଏବଂ ଦେବୀଦେବତାଙ୍କୁ ପ୍ରସନ୍ନ କରିବାପାଇଁ ନରବଳୀକୁ ଧାର୍ମିକ ମାନ୍ୟତା ମିଳିଛି ।

ଉପରୋକ୍ତ ଉଦାହରଣରୁ ଆମର ସାଧାରଣ ବୁଦ୍ଧିରେ ଯାହା ବୁଝିପାରୁଛି, ତାହା ହେଉଛି ଆମର ଧର୍ମଗ୍ରନ୍ଥ ମାନଙ୍କରେ ଯେଉଁ ଅନୈତିକ ସଂଦେଶଗୁଡିକ ରହିଛି, ତାହା କେବଳ ବ୍ୟକ୍ତିକୁ ଅବାଟରେ ଯିବାପାଇଁ ବାଟ ଦେଖାଉନାହିଁ, ତା'ସହିତ ଦେଶର ସମ୍ବିଧାନ ଓ କାନୁନ୍ ବ୍ୟବସ୍ଥାକୁ ବି ଅପମାନ କରୁଛି ।

ଆଧ୍ୟାତ୍ମିକ ଚିନ୍ତନ ଦ୍ୱାରା ମାନବିକତା ଓ ନୈତିକତାର ବିକାଶ ହୋଇପାରିବ ବୋଲି ରାତିଦିନ ଭାଷଣ ଝାଡୁଥିବା ଧର୍ମଗୁରୁମାନଙ୍କର ଯୌନ କେଳେଙ୍କାରୀ ଓ ବ୍ୟଭିଚାର ଦୃଶ୍ୟ ଆମକୁ ପ୍ରତିଦିନ ଦେଖିବାକୁ ମିଳୁଛି । ମଜାକଥା ହେଉଛି ଯେ ଗୋଟିଏ ଟିଭି ଚ୍ୟାନେଲ କୌଣସି ସାଧୁଙ୍କ ବ୍ୟଭିଚାରକୁ ପରଦାଫାଶ କରୁଥିବା ବେଳେ, ଅନ୍ୟ ଗୋଟିଏ ଚ୍ୟାନେଲ ସେହି ସାଧୁଙ୍କୁ ନିର୍ଦ୍ଦୋଷ ପ୍ରମାଣିତ କରିବାପାଇଁ ତଥ୍ୟ ପ୍ରଚାର କରୁଛି । ଏହାଦ୍ୱାରା ଜନସାଧାରଣ ଦ୍ୱନ୍ଦ୍ୱରେ ପଡି ଜାଣିପାରନ୍ତି ନାହିଁ କେଉଁଟି ସତ୍ୟ ? ଯଦିଓ ଉକ୍ତ ସାଧୁଜଣକ ପୋଲିସ ଦ୍ୱାରା ଗିରଫ ହୋଇ ଜେଲକୁ ଯାଆନ୍ତି, ତଥାପି ଭକ୍ତମାନଙ୍କର ଭ୍ରମ ତୁଟିଯାଏ ନାହିଁ । କିଛିଦିନ ପରେ ଜେଲ୍‌ରୁ ମୁକୁଳି ଆସିଲେ ସାଧୁଙ୍କର ଭକ୍ତମାନେ ପୁଣି ତାଙ୍କୁ ପୂର୍ବଭଳି ପୂଜା, ସେବା କରନ୍ତି ।

ଆଉ କେତେକ ବ୍ୟକ୍ତି ଯୁକ୍ତି କରନ୍ତି ସେ ସମସ୍ତ ସାଧୁ ଖରାପ ନୁହଁନ୍ତି । ଏଇଠି କିଏ ଭଲ କିଏ ଖରାପ ଆମେ ଆଲୋଚନା କରିବା ଅନାବଶ୍ୟକ । ଆମର ଆଲୋଚ୍ୟ ବିଷୟ ହେଉଛି - ନୈତିକତା'କେଉଁଠୁ ମିଳିବ ? ପିଲାଟି ଦିନରୁ ଆମର ନୈତିକତା ବାପା, ମାଆ ଓ ଗୁରୁଜନମାନେ ଯେଉଁ ନୈତିକତାର ପାଠ ପଢାଉଛନ୍ତି ସେଗୁଡିକ ଏହି ତଥାକଥିତ ଧର୍ମଗୁରୁଙ୍କ ଉପଦେଶଠାରୁ କେଉଁ ଗୁଣରେ କମ୍ ?

ଆମ ଦେଶର ଧନୀ ଓ ଶିକ୍ଷିତ ବର୍ଗର ପ୍ରତିଷ୍ଠିତ ବ୍ୟକ୍ତିମାନେ ଯଦି ଏହି ଅପ୍ରିୟ ସତ୍ୟକୁ ବୁଝିପାରି ତର୍କ ସଂଗତଭାବେ ସତ୍‌କର୍ମ କରନ୍ତେ ତେବେ ନିମ୍ନବର୍ଗର ଲୋକମାନେ ବି ଆପେ ଆପେ ସେମାନଙ୍କୁ ଅନୁସରଣ କରି ଦେଶ ଏବଂ ସମାଜକୁ ଏକ ଉନ୍ନତ ଓ ବିକଶିତ ଦେଶରେ ପରିଣତ କରିପାରନ୍ତେ ।

*******

# ହେତୁବାଦର ଆବଶ୍ୟକତା

ଆମ ସମାଜର ଅଧିକାଂଶ ଲୋକ ହେତୁବାଦ ବିଷୟରେ କିଛି ବି ଜାଣନ୍ତି ନାହିଁ । ଏପରିକି ଶିକ୍ଷିତ ଲୋକମାନେ ବି ଇଂରାଜୀ ଶବ୍ଦ Rationalism କିମ୍ବା Atheism ବିଷୟରେ ଜାଣି ନଥିବା ସ୍ୱୀକାର କରନ୍ତି । ଯେଉଁମାନେ ହେତୁବାଦର ଅନ୍ୟ ଅର୍ଥ ନିରୀଶ୍ୱରବାଦ ବୋଲି ଜାଣନ୍ତି, ସେମାନଙ୍କ-ଧାରଣା "ହେତୁବାଦୀମାନେ ନାସ୍ତିକ । ସେମାନେ ଭୂତପ୍ରେତ, ଦେବୀଦେବତା, ଆତ୍ମାପରମାତ୍ମାକୁ ବିଶ୍ୱାସ କରୁନାହାଁନ୍ତି । ସେମାନେ ଧର୍ମବିରୋଧୀ, ଅସାମାଜିକ ଓ ଅନୈତିକ କାର୍ଯ୍ୟ କରୁଥିବା ବ୍ୟକ୍ତି । ଏହା ଏକ ଧର୍ମବିରୋଧୀ ବିଚାରଧାରା ଏବଂ ସମାଜପାଇଁ ଆଦୌ ଆବଶ୍ୟକ ନୁହେଁ ।" ହେତୁବାଦ ଉପରେ ବି ଆଲୋଚନା କରିବାକୁ ସେମାନେ ଭୟ କରନ୍ତି । ଏହାର ମୁଖ୍ୟତଃ ଦୁଇଟି କାରଣ । ପ୍ରଥମତଃ ସେମାନଙ୍କ ମନରେ ଧର୍ମ ଓ ଈଶ୍ୱର ପ୍ରତି ଥିବା ବିଶ୍ୱାସ ଦୋହଲିଯିବ । ଦ୍ୱିତୀୟତଃ ଧର୍ମ ଓ ଈଶ୍ୱର ବିଷୟରେ ହେତୁବାଦୀ ପ୍ରଶ୍ନଗୁଡିକର ତର୍କସଙ୍ଗତ ଉତ୍ତର ନପାଇବା । ସେମାନେ ରଢିବାଦୀ ଓ ଭାଗ୍ୟବାଦୀ ମଣିଷ । ପୂର୍ବରୁ ଯାହା ଯେମିତି ଅଛି ତାହାକୁ ସେମିତି ହିଁ ଗ୍ରହଣ କରି ପରିସ୍ଥିତି ସହ ବୁଝାମଣା କରି ଚଳିବାକୁ ସେମାନେ ପସନ୍ଦ କରିଥା'ନ୍ତି । ପରିବର୍ତ୍ତନକୁ ସେମାନେ ସ୍ୱୀକାର କରିବାକୁ ଭୟ କରନ୍ତି । ପ୍ରାଚୀନ ରଢିବାଦ, ପରମ୍ପରା ଓ ଅବୈଜ୍ଞାନିକ ନୀତିରେ ସେମାନେ କୌଣସି ପରିବର୍ତ୍ତନକୁ ସ୍ୱୀକାର କରିପାରନ୍ତି ନାହିଁ । ହେତୁବାଦ ମଣିଷ ଜୀବନପାଇଁ କେତେ ଜରୁରୀ ଏହା ସାଧାରଣ ଲୋକମାନେ କଳ୍ପନା ବି କରିପାରନ୍ତି ନାହିଁ ।

ହେତୁବାଦୀ ଲୋକ ଯଦି କେଉଁଠି କୌଣସି ଚମତ୍କାର ପ୍ରଦର୍ଶନ କରି ଲୋକମାନଙ୍କୁ ଠକୁଥିବା ଘଟଣାର ପର୍ଦ୍ଦାଫାସ୍ କରିଦିଏ, ସେଇଠି ଏହି ପରମ୍ପରାବାଦୀ ଲୋକମାନେ ହେତୁବାଦୀଙ୍କୁ ବିରୋଧ କରି ଯୁକ୍ତି ବାଢିଥା'ନ୍ତି-ଯଦିବା କେହି ଚମତ୍କାର ପ୍ରଦର୍ଶନ ଦ୍ୱାରା ଦି'ପଇସା ରୋଜଗାର କରି ନିଜ କୁଟୁମ୍ବ ପୋଷୁଛି ତ କ୍ଷତି କ'ଣ ? ସାରା ଦେଶରେ ତ କୋଟିକୋଟି ଟଙ୍କାର ଭ୍ରଷ୍ଟାଚାରର ଖେଳ ଚାଲିଛି, ହେତୁବାଦୀମାନେ କ'ଣ ସେମାନଙ୍କ ପର୍ଦ୍ଦାଫାସ୍ କରିପାରୁଛନ୍ତି ? ସେମାନଙ୍କ ଯୁକ୍ତିର ଅର୍ଥ ହେଲା - ଯଦି ବଡ ଚୋରକୁ ଧରି ନପାରୁଛ, ତେବେ ଛୋଟ ଚୋରକୁ ଧରିଲେ ବି ଛାଡଦିଅ । ଏହିଭଳି ଯୁକ୍ତି କରୁଥିବା ବ୍ୟକ୍ତିଙ୍କୁ ହେତୁବାଦର ଅସଲ ଉଦ୍ଦେଶ୍ୟ କିପରି ବା ବୁଝେଇ ହେବ ?

ହେତୁବାଦର ଅର୍ଥ ହେଉଛି - ବିବେକଶୀଳ, ବୁଦ୍ଧିବାଦୀ ଓ ତର୍କଶୀଳ ହେବା। ସାଧାରଣ ଭାଷାରେ କୁହାଯାଇପାରେ, ନିଜ ବୁଦ୍ଧି ଓ ବିବେକର ପ୍ରୟୋଗ କରି ସତ୍ୟର ସନ୍ଧାନ କରିବା। ଯେଉଁ ବ୍ୟକ୍ତି ନିଜ ବୁଦ୍ଧି ବଳରେ ନିଜ ଚାରିପାର୍ଶ୍ୱରେ ଥିବା ସଂସାରକୁ ଜାଣିବା ଓ ବୁଝିବା ସହିତ ପ୍ରତ୍ୟେକ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିବାକୁ ପ୍ରୟାସ କରେ ସେ ହିଁ ସଚ୍ଚା ହେତୁବାଦୀ। ମଜାକଥା ହେଉଛି - ଆପଣ ଯେକୌଣସି ବ୍ୟକ୍ତିକୁ ଯଦି ପ୍ରଶ୍ନ କରିବେ, କ'ଣ ଆପଣ ସବୁକାମ ନିଜ ବୁଦ୍ଧି ପ୍ରୟୋଗ କରି କରନ୍ତି ? ସେ ଦୃଢତାର ସହିତ କହିବ - ହଁ। ପ୍ରକୃତରେ କ'ଣ ବ୍ୟକ୍ତିଜଣକ ସତ କହୁଛି ? ହୁଏତ ନା। କାରଣ, ବହୁତ କମ୍ ଲୋକ ସ୍ୱାଧୀନ ଭାବେ ନିଜ ବୁଦ୍ଧିବଳରେ କାମ କରିଥା'ନ୍ତି। ବାକି ଅନ୍ୟମାନେ ଅନ୍ୟର ନିର୍ଦ୍ଦେଶ କିମ୍ବା ନିର୍ଦ୍ଧାରିତ ପଦ୍ଧତିକୁ ପାଳନ କରିଥା'ନ୍ତି। ଏହାର କାରଣ ହେଉଛି, ସମାଜରେ ପିଲାଟି ବେଳୁଶିକ୍ଷା ଦିଆଯାଏ - ବଡମାନଙ୍କ କଥା ମାନିଚଳ, ଧର୍ମଗ୍ରନ୍ଥରେ ଲିଖିତ ନିର୍ଦ୍ଦେଶଗୁଡିକୁ ବିଶ୍ୱାସକର, କୌଣସି ପ୍ରକାର ପ୍ରଶ୍ନ କରନାହିଁ, ମନରେ କିନ୍ତୁ-ପରନ୍ତୁ ଭଳି ସନ୍ଦେହ ରଖନାହିଁ, ଯାହା ବି କୁହାଯାଇଛି ତାହାକୁ ସମ୍ପୂର୍ଣ୍ଣ ରୂପେ ସ୍ୱୀକାର କର। ଗୁରୁଙ୍କ ମହାନତା ଏବଂ ଶିଷ୍ୟର ଆଜ୍ଞାକାରୀ ଗୁଣ ଦର୍ଶାଇବାପାଇଁ ମହାଭାରତର ଗୁରୁ ଦ୍ରୋଣାଚାର୍ଯ୍ୟ ଏବଂ ଶିଷ୍ୟ ଏକଲବ୍ୟର ଉପାଖ୍ୟାନ ସମସ୍ତେ ଉଦ୍ଧାରଣ କରିଥା'ନ୍ତି। ଅର୍ଥାତ୍ ପିଲାଟି ଦିନରୁ ମଣିଷ ମନରେ ଉଠୁଥିବା ଜିଜ୍ଞାସା ଶାନ୍ତ କରିବାପାଇଁ ସମସ୍ତ ମାର୍ଗ ରୁଦ୍ଧ କରିଦିଆଯାଏ। ଯେଉଁ ବ୍ୟକ୍ତି ରଢିବାଦୀ ମିଥ୍ୟାବାଦୀ ଓ ତର୍କହୀନ ବିଷୟ ଉପରେ କୌଣସି ସନ୍ଦେହ ପ୍ରକଟ କରିବ ନାହିଁ, ନିଜର ବୁଦ୍ଧି ଓ ବିବେକକୁ ବନ୍ଧକ ରଖି ନିଜେ ମାନସିକ ଗୋଲାମୀ କରୁଥିବ ଅର୍ଥାତ୍ ଯେଉଁ ବ୍ୟକ୍ତି ବିବେକଶୀଳ ନ ହୋଇ ବିବେକହୀନ ହୋଇଥିବ, ସେହି ବ୍ୟକ୍ତି ସମାଜରେ ଭଲଲୋକର ସମ୍ମାନ ପାଇଥାଏ। ସେହି ବିବେକହୀନ ବ୍ୟକ୍ତିମାନେ ହିଁ ହେତୁବାଦକୁ ବିରୋଧ କରିଥା'ନ୍ତି। ମଣିଷ ଜନ୍ମରୁ ହିଁ ତର୍କଶୀଳ ମନଦେଇ ଆସେ। ନିଜର ଜିଜ୍ଞାସା ପ୍ରବୃତ୍ତି ଯୋଗୁଁ ସଂସାରକୁ ଜାଣିବା ଓ ବୁଝିବାପାଇଁ କ'ଣ, କାହିଁକି, କିପରି, କେବେ ଓ କେଉଁଠି ଇତ୍ୟାଦି ପ୍ରଶ୍ନ କରିଥାଏ। ତେଣୁ ଜ୍ଞାନ ଅର୍ଜନର ପ୍ରଥମ ପାହାଚ ହେଉଛି ପ୍ରଶ୍ନ ବା ତର୍କ । ପ୍ରଶ୍ନର ସନ୍ତୋଷଜନକ ଉତ୍ତର ନମିଳିବା ଯାଏ, ମଣିଷ ତର୍କ କରିଥାଏ।

ଧର୍ମଗୁରୁମାନଙ୍କ ପାଇଁ ଧର୍ମ ଓ ଈଶ୍ୱର ସମ୍ପର୍କରେ ତର୍କସଙ୍ଗତ ଉତ୍ତର ଦେବା ଏକ କଠିନ ସମସ୍ୟା ଥିଲା ଓ ଆଜି ବି ଅଛି । ତେଣୁ ପ୍ରଶ୍ନକର୍ତ୍ତାର ମୁହଁ ବନ୍ଦ ରଖିବାପାଇଁ କୁହାଗଲା - "ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର"। ଏହି ମନ୍ତ୍ର ଭଲ କାମ କଲା । ଈଶ୍ୱରଙ୍କୁ କାହିଁକି କୌଣସି ଇନ୍ଦ୍ରିୟ ଦ୍ୱାରା ଅନୁଭବ କରିହେଉନି ? ପ୍ରଶ୍ନର ଉତ୍ତର ହେଲା "ମାନିଲେ ଠାକୁର, ନମାନିଲେ ପଥର ।" ଅର୍ଥାତ୍ ଈଶ୍ୱରଙ୍କୁ ଅନୁଭବ କରିପାରୁ ନଥିବା ଦୋଷତକ ଭକ୍ତ ମୁଣ୍ଡରେ ଥୋଇ ଦିଆଯାଇଛି । ଭକ୍ତ ଯଦି ଈଶ୍ୱରଙ୍କୁ ଅନୁଭବ କରୁନାହିଁ ତେବେ ଭକ୍ତ ମନରେ ଭକ୍ତି ନାହିଁ । ଏଥିରେ ଆଉ ତର୍କର ଅବକାଶ ରହିଲା ନାହିଁ ।

ଆଜିକାଲି ଭଗବାନଙ୍କ ସହିତ ଭକ୍ତଙ୍କୁ ଯୋଡ଼ିବାପାଇଁ ଇଣ୍ଟରନେଟ୍‌ର ସାହାଯ୍ୟ ନିଆଯାଉଛି । ଟାଇମ୍‌ସ ଅଫ୍ ଇଣ୍ଡିଆରେ ପ୍ରକାଶିତ ଏକ ଖବର ଅନୁସାରେ ଗୁଞ୍ଜନ ମଲ୍ଲ ନାମକ ଜଣେ ବ୍ୟକ୍ତି ଅନ୍‌ଲାଇନ୍ ପ୍ରସାଦ ୱେବ୍‌ସାଇଟ୍ ଖୋଲି, ଭାରତର ପ୍ରାୟ ୫୦ଟି ପ୍ରସିଦ୍ଧ ମନ୍ଦିରର ପ୍ରସାଦ ଭକ୍ତଙ୍କ ପାଖକୁ ପଠାଇ ଦେଉଛନ୍ତି । ମାତ୍ର ୫୦୧ଟଙ୍କା ତାଙ୍କ ଖାତାରେ ଜମାକଲେ, ସେ ୭ରୁ ୧୦ଦିନ ଭିତରେ ପ୍ରସାଦ ପଠେଇଦେବେ । ସେ କୁହନ୍ତି, ପ୍ରତିଦିନ ହାରାହାରି ୨୦୦ ଭକ୍ତଙ୍କ ଅର୍ଡର ସେ ପାଉଛନ୍ତି । ଏଥିରେ ପ୍ରକାଶିତ ଅନ୍ୟ ଏକ ଖବର ହେଉଛି ଦକ୍ଷିଣ ଭାରତୀୟ ମନ୍ଦିରଗୁଡ଼ିକରେ ମହିଳାମାନଙ୍କ ଦ୍ୱାରା ଅର୍ପଣ କରାଯାଉଥିବା ମୁଣ୍ଡର ଲମ୍ବା କେଶରୁ "ୱେଭ୍‌ସ ହେୟାର"ନାମକ ଏକ ବ୍ୟବସାୟୀ ସଂସ୍ଥା, ପ୍ରତି କିଲୋଗ୍ରାମ ୫୦୦୦ରୁ ୨୫୦୦୦ ଟଙ୍କାରେ କିଣି ନେଇ ୱିଗ ତିଆରି କରି ବାହାର ଦେଶକୁ ରପ୍ତାନି କରନ୍ତି । ଏହି କମ୍ପାନୀର ମାଲିକ "ମଲ୍ଲିକ ଶ୍ରୀକୁମାର" ଏହି ବ୍ୟବସାୟରୁ କେତେ ଫାଇଦା ପାଆନ୍ତି - ସେକଥା ଅବଶ୍ୟ ପ୍ରକାଶ କରିନାହାଁନ୍ତି । ଏହି ଦୁଇଟି ଉଦାହରଣରୁ ଗୋଟିଏ କଥା ତ ସ୍ପଷ୍ଟ ହେଉଛି ଯେ, ଭକ୍ତଙ୍କ ଆସ୍ଥାକୁ ପୁଞ୍ଜି କରି ଖୁବ୍ ସହଜରେ ବ୍ୟବସାୟ କରିହେଉଛି । ଦୂର ଦୂରାନ୍ତରେ ଥିବା ମନ୍ଦିରର ପ୍ରସାଦ କିଣି ସେବନ କଲେ ଯଦି ପୁଣ୍ୟ ପ୍ରାପ୍ତ ହେଉଛି, ତେବେ ସେଇଠି ଭକ୍ତି ଏକ ଲୋକଦେଖାଣିଆ ଛଳନା ନୁହେଁ କି ? ମହିଳାଙ୍କ ଅତି ପ୍ରିୟ ଏବଂ ସୌନ୍ଦର୍ଯ୍ୟର ପ୍ରତୀକ କେଶରାଶିକୁ କାଟିନେଇ ବିକ୍ରି କରୁଥିବା ଦଲାଲମାନେ ତ ଧନୀ ହୋଇଯାଉଛନ୍ତି କିନ୍ତୁ ସରଳ ବିଶ୍ୱାସୀ ମହିଳାମାନେ ଏକ ମିଥ୍ୟା ଆଶ୍ୱାସନା ବ୍ୟତୀତ ପାଉଛନ୍ତି କ'ଣ ?

*******

# ଆମର ଧର୍ମପ୍ରବଣ ମାନସିକତା

ସମାଜର ପ୍ରଚଳିତ ଧାର୍ମିକ ବିଶ୍ୱାସର ବିଭିନ୍ନ ରୂପ ଦେଖି ଜଣେ ମୁକ୍ତ ଚିନ୍ତକ ମନରେ ଅନେକ ଦ୍ୱନ୍ଦ୍ୱ ସୃଷ୍ଟି ହୁଏ। ତା'ମନରେ ଉଠୁଥିବା ଅନେକ ଅବୁଝା ପ୍ରଶ୍ନର ଉତ୍ତର ପାଇବାକୁ ସେ ବ୍ୟାକୁଳ ହୁଏ। ଧର୍ମ ସମ୍ପର୍କରେ ପାଣ୍ଡିତ୍ୟଲାଭ କରିଥିବା ତଥାକଥିତ ଧର୍ମଗୁରୁମାନେ ଧର୍ମ ସମ୍ପର୍କରେ କୌଣସି ପ୍ରଶ୍ନର ସିଧା ଉତ୍ତର ଦେଇନଥା'ନ୍ତି। ସମସ୍ତେ ନିଜ ନିଜର ମତ ଅନୁସାରେ ଗୋଳାମାଳିଆ ଉତ୍ତର ଦେଇ ପ୍ରଶ୍ନକୁ ଏଡାଇ ଯିବାକୁ ଚେଷ୍ଟା କରିଥା'ନ୍ତି। ପ୍ରଶ୍ନ କର୍ତ୍ତାକୁ ଚୁପ୍ କରିବାପାଇଁ ଶେଷରେ କହିଥା'ନ୍ତି "ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର।" ଅର୍ଥାତ୍ ତୁମେ ଯଦି ବିଶ୍ୱାସ କରି ପାରୁନାହଁ ତେବେ ଚାଲିଯାଅ, ତୁମର କୌଣସି ପ୍ରଶ୍ନର ଉତ୍ତର ମୁଁ ଦେଇପାରିବି ନାହିଁ।

ଏଇଠି ପ୍ରଶ୍ନ ଉଠୁଛି-ଶିଷ୍ୟର ମନର ଶଙ୍କା ଦୂର କରିବାପାଇଁ ଗୁରୁ ଯଦି ମନା କରନ୍ତି, ସେ ଗୁରୁ ପଦବାଚ୍ୟ କି ? ଗୋଟିଏ ସଦ୍‌ଗୁରୁଙ୍କ ଗୁଣ ହେଉଛି, ସତ୍ୟର ସମର୍ଥନ କରିବା। ତେଣୁ ଯଦି ଧର୍ମଗୁରୁ ଶିଷ୍ୟର ପ୍ରଶ୍ନର ଉତ୍ତର ଜଣିନାହାଁନ୍ତି, ତେବେ ସେ ସ୍ପଷ୍ଟ ଭାବେ ତାହା ସ୍ୱୀକାର କରୁନାହାନ୍ତି କାହିଁକି ? ଗୁରୁମାନଙ୍କର ଭୁଲ୍ ସ୍ୱୀକାର ନକରିବା ଏବଂ ଆମେ ଯାହା କହୁଛୁ, ତାକୁ ହିଁ ବିନା ତର୍କରେ ମାନିବାକୁ ମାନସିକସ୍ତରରେ ବାଧ୍ୟ କରିବା କାରଣରୁ ଆଜି ଯାଏଁ ସମାଜରେ ଧର୍ମକୁ ନେଇ ବିଭ୍ରାନ୍ତି ସୃଷ୍ଟି ହେଉଛି। ଧର୍ମର ପରିଭାଷାକୁ ନେଇ ବିଭିନ୍ନ ବିଦ୍ୱାନଙ୍କ ମତ ଅଲଗା ଅଲଗା। କେତେକ କୁହନ୍ତି-"ଏହି ଲୌକିକ ଜଗତର କର୍ତ୍ତବ୍ୟ ସମ୍ପାଦନ ହେଉଛି ମଣିଷର ଧର୍ମ।" ଏହାର ବିପରୀତ ଆଉ କେତେକ କୁହନ୍ତି -"ପାରଲୌକିକ ଜଗତ ସମ୍ପର୍କୀୟ ଧର୍ମୀୟ କର୍ମକାଣ୍ଡ କରିବା ହେଉଛି ମଣିଷର ଅସଲ ଧର୍ମ। ଏହାଦ୍ୱାରା ମଣିଷର ଇହଲୋକ ଏବଂ ପରଲୋକ ସୁଧୁରି ଯାଏ।"

ସମାଜରେ ପୁରୁଷ ବା ସ୍ତ୍ରୀ ନିଜ ପରିବାର, ସମାଜ ଓ ଦେଶ ପାଇଁ ପ୍ରତିବଦ୍ଧତା ଅନୁଭବ କଲେ କିଛି କର୍ତ୍ତବ୍ୟ ସମ୍ପାଦନ କରିବା ଅନିବାର୍ଯ୍ୟ ହୋଇପଡେ।

ସେହି ଅନିବାର୍ଯ୍ୟ କର୍ତ୍ତବ୍ୟ ହିଁ ମାନବ ଧର୍ମ ବୋଲି ସମସ୍ତେ ବିଶ୍ୱାସ କରନ୍ତି । ଏହା ହେଉଛି ତର୍କଶୀଳ ଚିନ୍ତନ । ଏହି ନିୟମକୁ ଯେଉଁ ସମାଜର ନାଗରିକମାନେ ମାନି ଚଳନ୍ତି ସେହି ସମାଜରେ କର୍ମଭୀରୁ ଲୋକମାନଙ୍କ ସଂଖ୍ୟା କମ୍ ଏବଂ କର୍ମଠ ଲୋକମାନଙ୍କ ସଂଖ୍ୟା ଅଧିକ ହୋଇଥାଏ । ଏହାର ପ୍ରମାଣ ଦେଇଛନ୍ତି ଜାପାନୀ ସମାଜର ଲୋକମାନେ । ଏହାର ବିଶଦ ବିବରଣୀ ଅନାବଶ୍ୟକ ।

ଆମ ଦେଶରେ ଏହି ନିୟମର ଠିକ୍ ଓଲଟା ଲକ୍ଷଣ ଦେଖିବାକୁ ମିଳୁଛି । ଏଇଠି କର୍ମଭୀରୁ ଲୋକମାନଙ୍କ ସଂଖ୍ୟା ଅଧିକ । କମ୍ ପରିଶ୍ରମରେ ଅଧିକ ପାଇବା ଲାଳସା କିମ୍ବା ବିନା ପରିଶ୍ରମରେ କୌଣସି ଚମତ୍କାରୀ ଶକ୍ତି ବଳରେ ସବୁ କିଛି ପାଇଯିବାର ଦିବାସ୍ୱପ୍ନ ଦେଖି ଦେଖି ଅଧିକାଂଶ ଲୋକ ଜୀବନ ବିତେଇ ଦିଅନ୍ତି ।

ଧର୍ମଗୁରୁ ଏବଂ ସେମାନଙ୍କ ଅନ୍ଧଭକ୍ତ (ଆସ୍ତିକ)ମାନଙ୍କ ମନରେ ଧର୍ମକୁ ନେଇ ଯେଉଁ ପ୍ରକାର ବିଶ୍ୱାସ ଦୃଢ଼ୀଭୂତ ହୋଇଛି ତାହାର ଏକ ଲେଖା ଯୋଖା ଏଠାରେ ପ୍ରସ୍ତୁତ କରିବା ଉଚିତ୍ ହେବ ।

(୧) ଆସ୍ତିକମାନଙ୍କର ଧର୍ମବିଚାର ଆଧ୍ୟାତ୍ମ ତଥା ପରଲୋକ ଉପରେ କେନ୍ଦ୍ରିତ ହୋଇଥାଏ ।

(୨) ସେମାନେ ବ୍ରାହ୍ମାଣ୍ଡର ସୃଷ୍ଟି ସମ୍ପର୍କରେ ଯେଉଁ ଐଶ୍ୱରୀୟ ଶକ୍ତିକୁ ବିଶ୍ୱାସ କରୁଛନ୍ତି । ତା'ପଛରେ ଆଜି ପର୍ଯ୍ୟନ୍ତ କୌଣସି ବୈଜ୍ଞାନିକ ଆଧାର ପ୍ରାପ୍ତ ହୋଇନାହିଁ ।

(୩) ସେମାନେ ବିଶ୍ୱାସ କରନ୍ତି ଆମ ପାଇଁ ହିଁ ଏହି ସୃଷ୍ଟି ହୋଇଛି । ତେଣୁ ଆମେ ହିଁ ଈଶ୍ୱରଙ୍କ ବରପୁତ୍ର ।

(୪) ସେମାନଙ୍କର ଧର୍ମୀୟ ବିଶ୍ୱାସର ଏକ ବିଶେଷତ୍ୱ ହେଉଛି - ଆମ ଧର୍ମ ଓ ଅନ୍ୟମାନଙ୍କ ଧର୍ମ । ଅର୍ଥାତ୍ ଧର୍ମ ଏକ ନୁହେଁ ଅନେକ ।

(୫) ସେମାନେ ଭାବନ୍ତି - ଆମ ଧର୍ମର ଲୋକମାନେ ହିଁ ସଚ୍ଚୋଟ, ଅନ୍ୟ ଧର୍ମର ଲୋକମାନେ ବେଇମାନ ଓ ଶୈତାନ ।

(୬) ସେମାନେ ନିଜ ଧର୍ମାବଲମ୍ବୀମାନଙ୍କୁ ଶ୍ରଦ୍ଧା ଓ ସ୍ନେହ କରନ୍ତି କିନ୍ତୁ ଅନ୍ୟ ଧର୍ମାବଲମ୍ବୀମାନଙ୍କୁ ଘୃଣା ଓ ତିରସ୍କାର କରନ୍ତି ।

(୭) ସେମାନେ ସମାଜ ଓ ଦେଶର ଜ୍ୱଳନ୍ତ ସମସ୍ୟାର ସମାଧାନ ଦାୟିତ୍ୱ ଈଶ୍ୱରଙ୍କ ଇଛା ଉପରେ ଥୋଇ ଦେଇ ନିଜେ ଦାୟିତ୍ୱରୁ ଦୂରେଇ ରହିବାକୁ ଚାହାଁନ୍ତି ।

(୮) ସେମାନଙ୍କ ଉପରେ ତଥ୍ୟ ଅପେକ୍ଷା ଶ୍ରଦ୍ଧା ଓ ବିଶ୍ୱାସ ବେଶୀ ପ୍ରଭାବ ପକେଇ ଥାଏ ।

(୯) ସେମାନଙ୍କ ଶେଷ ଇଛା ହେଉଛି ନିଜର ମନୋବାଞ୍ଛା ପୂରଣ ହେଉ । ସେଥିପାଇଁ ସେମାନେ ବିଭିନ୍ନ ଦେବୀ, ଦେବତାଙ୍କ ନାମରେ ମାନସିକ କରିଥା'ନ୍ତି ।

(୧୦) ସେମାନେ ସର୍ବଦା ଜିତିବାକୁ ହିଁ ଗୁରୁତ୍ୱ ଦିଅନ୍ତି । ହାରିଗଲେ ଜୀବନରେ ନିରାଶ ହୋଇପଡନ୍ତି ।

(୧୧) ସେମାନେ ନିଜ ଧର୍ମର ସୁରକ୍ଷା, ପ୍ରଚାର ଓ ପ୍ରସାରପାଇଁ ଆତ୍ମ ବଳିଦାନ ଦେବାକୁ ସଦା ତତ୍ପର ରହନ୍ତି ।

(୧୨) ସେମାନେ ଜୀବନ ସଂଘର୍ଷରୁ ଯଥା ଶୀଘ୍ର ମୋକ୍ଷ ପ୍ରାପ୍ତ କରି ପଳାୟନର ମାର୍ଗ ଖୋଜିଥାନ୍ତି ।

(୧୩) ସେମାନେ ମୋକ୍ଷପ୍ରାପ୍ତ କରି ସ୍ୱର୍ଗରେ ବାସ କରିବା ଆଶ୍ୱାସନା ପାଇ, ସଂସାରର ଦୁଃଖ ଓ କଷ୍ଟକୁ ଭୁଲି ଯାଆନ୍ତି ।

(୧୪) ସେମାନେ ସର୍ବଦା ଅପରିବର୍ତ୍ତିତ ଅଥବା ଯଥାସ୍ଥିତିରେ ହିଁ ରହିବାକୁ ପସନ୍ଦ କରନ୍ତି ।

(୧୫) ସେମାନେ ପ୍ରାୟ ନୂତନ ଚିନ୍ତାଧାରା ପ୍ରତି ଅସହିଷ୍ଣୁ ପ୍ରଦର୍ଶନ କରନ୍ତି ।

(୧୬) ସେମାନଙ୍କ ଦୃଷ୍ଟିକୋଣ ଉଦାର ନହୋଇ ସଂକୀର୍ଣ୍ଣ ହୋଇଥାଏ ।

(୧୭) ସେମାନେ ରତିବାଦୀ, ପରମ୍ପରାବାଦୀ ଏବଂ ବିଭିନ୍ନ ରୀତି ରିବାଜରେ ବାନ୍ଧି ହୋଇ ରହିବାକୁ ପସନ୍ଦ କରନ୍ତି ।

(୧୮) ସେମାନେ ଭୂତକାଳକୁ ହିଁ ସୁବର୍ଣ୍ଣକାଳ ବୋଲି ଭାବୁଥା'ନ୍ତି । ଆଗକୁ ପାଦ ବଢେଇବା ଅପେକ୍ଷା ବିପରୀତ ଗାମୀ ହେବାକୁ ପସନ୍ଦ କରନ୍ତି ।

(୧୯) ସେମାନେ ବିଜ୍ଞାନ, ପ୍ରଗତି ଓ ଆଧୁନିକ ଜୀବନ ଶୈଳୀକୁ ଘୋର ବିରୋଧ କରନ୍ତି । (କିନ୍ତୁ ସବୁ କିଛି ଉପଭୋଗ କରନ୍ତି)

(୨୦) ସେମାନଙ୍କ ପାଇଁ ବୈଜ୍ଞାନିକ ତଥ୍ୟ ସମ୍ବଳିତ ପୁସ୍ତକ ଅପେକ୍ଷା ପ୍ରାଚୀନ ଧର୍ମଗ୍ରନ୍ଥ ହିଁ ବେଶୀ ଜ୍ଞାନବର୍ଦ୍ଧକ ପୁସ୍ତକ । (କିନ୍ତୁ କିଛି ବୁଝନ୍ତି ନାହିଁ)

(୨୧) ସେମାନେ ବୈଜ୍ଞାନିକ ଅନୁସନ୍ଧାନ, ଗବେଷଣା ଓ ଉଦ୍‌ଭାବନ ଅପେକ୍ଷା ଧାର୍ମିକ କର୍ମକାଣ୍ଡ ବେଶୀ ମହତ୍ତ୍ୱପୂର୍ଣ୍ଣ ବୋଲି ଭାବନ୍ତି ।

(୨୨) ଏହି ଦୁନିଆର ରୋଗ, ଶୋକ, ଦୁଃଖ ଓ କଷ୍ଟକୁ ସୁଧାରିବା ଅପେକ୍ଷା ପରଲୋକ ସୁଧାରିବାପାଇଁ ସେମାନେ ବେଶୀ ଚିନ୍ତିତ ରହନ୍ତି । (ସେଥିପାଇଁ ଶୋଷଣର ଶିକାର ହୋଇଥା'ନ୍ତି)

(୨୩) ମୃତ୍ୟୁ ପୂର୍ବରୁ ଜୀବନ ଶୈଳୀ କିପରି ସୁଖମୟ ହେବ, ସେ କଥା ଚିନ୍ତା ନକରି, ମୃତ୍ୟୁପରେ କ'ଣ ହେବ ସେ ବିଷୟରେ ଚିନ୍ତା କରନ୍ତି ।

(୨୪) ସେମାନଙ୍କ ଚିନ୍ତନର ପ୍ରାରମ୍ଭିକ ବିନ୍ଦୁ ଈଶ୍ୱରଙ୍କଠାରୁ ଆରମ୍ଭ ହୋଇ ଈଶ୍ୱରଙ୍କଠାରେ ହିଁ ସମାପ୍ତ ହୋଇଯାଏ । କାରଣ ସେମାନେ ବିଶ୍ୱାସ କରନ୍ତି- ଈଶ୍ୱର ହିଁ ଆମର ରକ୍ଷାକର୍ତ୍ତା । "ରଖେ ହରି ମାରେ କିଏ, ମାରେ ହରି ରଖେ କିଏ ।"

ଏହାସବୁ ଦେଖି ଆମେ କହି ପାରିବା-ଧର୍ମ ହେଉଛି ସାମୂହିକ ପାଗଳପଣ । ଜଣେ ବ୍ୟକ୍ତିର ପାଗଳପଣ ଅପେକ୍ଷା ସାମୁହିକ ପାଗଳପଣ ବେଶୀ କ୍ଷତିକାରକ । ଆମେ କ'ଣ କେବେ ଏହି ପାଗଳପଣରୁ ମୁକ୍ତ ହୋଇପାରିବା ?

*******

# ଭଗବାନକେ ଘର ଦେର୍ ହେ.....

ହିନ୍ଦୀରେ ଗୋଟିଏ ବହୁ ପ୍ରଚଳିତ ପ୍ରବାଦ ରହିଛି, "ଭଗବାନକେ ଘର ମେ ଦେର ହୈ....ପର୍ ଅନ୍ଧେର୍ ନହିଁ ହୈ।" ଓଡିଆରେ ଏହାର ଭାବାର୍ଥ ହେବ, "ଭଗବାନଙ୍କ ଘରେ ବିଳମ୍ବ ହୋଇପାରେ କିନ୍ତୁ ଅସମ୍ଭବ ନାହିଁ। କୌଣସି ହିନ୍ଦୀଭାଷୀ କବି ଯତିପାତ ଯୋଡି ଏହି ପ୍ରବାଦଟିକୁ ଲେଖି ଯାଇଛନ୍ତି। ଯାହା କହିବାକୁ ଓ ଶୁଣିବାକୁ ଭଲ ଲାଗେ। କୌଣସି ଦୁଃଖୀ ମଣିଷକୁ ସାନ୍ତ୍ୱନା ଦେବାପାଇଁ ଏହି ବାକ୍ୟଟି ସତେ ଯେପରି କଷ୍ଟ ନିବାରକ ମଲମ ସଦୃଶ କାମ କରେ। ସେ ମନେମନେ ଆଶ୍ୱସ୍ତ ହୋଇଯାଏ କି ମୋ ପାଇଁ ଯେଉଁ ଦୁଃଖ ଆସିଛି, ତାହାର ଉପଶମ ପାଇଁ ମୋତେ କିଛି ସମୟ ଅପେକ୍ଷା କରିବାକୁ ପଡିବ। କିନ୍ତୁ ସମୟସୀମା କେତେ, ସେ କଥା କୌଣସି ସୂତ୍ରରୁ ଜାଣିବାର ଉପାୟ ନାହିଁ। କେତେ ଘଣ୍ଟା, କେତେ ଦିନ, କେତେ ମାସ, କେତେ ବର୍ଷ ଅଥବା ଆଜୀବନ ଅପେକ୍ଷା କରିବାକୁ ପଡିବ ଜଣାନାହିଁ । କେବଳ ଧୈର୍ଯ୍ୟ ଧରି ଅପେକ୍ଷା କଲେ, ଦିନେ ସୁଖ ନିଶ୍ଚୟ ମିଳିବ ବୋଲି ଏକ କାଳ୍ପନିକ ଆଶ୍ୱାସନା ମିଳିବ।

ଏଠି ସ୍ୱାଭାବିକ ଭାବରେ ଆମ ମନରେ ପ୍ରଶ୍ନ ଉଠୁଛି, ଭଗବାନ ହେଉଛନ୍ତି ସର୍ବଜ୍ଞ, ସର୍ବଶକ୍ତିମାନ, ସର୍ବବିଦ୍ୟମାନ ଓ ପରମ ଦୟାଳୁ। ତାଙ୍କ ଦ୍ୱାରା ଦୁନିଆର ଯେକୌଣସି ସମସ୍ୟା କ୍ଷଣିକରେ ସମାଧାନ ହୋଇଯିବା କଥା, କିନ୍ତୁ ବିଳମ୍ବରେ ହେବାର କାରଣ କ'ଣ ?

ମଣିଷ ତିଆରି କାନୁନ ବ୍ୟବସ୍ଥା, କୋର୍ଟ କଚେରୀର ନ୍ୟାୟ ପ୍ରଣାଳୀ ଭଳି ଭଗବାନଙ୍କ ନ୍ୟାୟାଳୟରେ ବି କ'ଣ ସାକ୍ଷୀ, ପ୍ରମାଣ, ତର୍କ, ବିତର୍କ ଆଦି କରାଯାଇ ଦୋଷିକୁ ଦଣ୍ଡ ଦିଆଯାଏ ? ସେୟା ଯଦି ହୁଏ ତେବେ ଭଗବାନଙ୍କ ଏବଂ ମଣିଷ ଭିତରେ ପ୍ରଭେଦ ରହିବ କେଉଁଠି ?

ଗତ ୨୦୧୩ ଜୁନ ମାସ ୧୬ ଓ ୧୭ ତାରିଖରେ ପ୍ରାକୃତିକ ବିପର୍ଯ୍ୟୟ ଓ ପ୍ରବଳ ବର୍ଷା ଯୋଗୁଁ ଉତ୍ତରାଖଣ୍ଡରେ କେଦାରନାଥ ଓ ବଦ୍ରୀନାଥଙ୍କ ଭକ୍ତଙ୍କ

ସମେତ ହଜାର ହଜାର ଲୋକ ମୃତ୍ୟୁବରଣ କଲେ । ଏଇଠି ବି କ'ଣ ସେଇ ଏକା ପ୍ରବାଦକୁ ଲାଗୁ କରାଯାଇପାରେ ? ଶିବଙ୍କ ନ୍ୟାୟାଳୟରେ ଶୀଘ୍ର ବିଚାରଣା ହୋଇପାରିଲା ନାହିଁ, କେଉଁମାନେ ପୁଣ୍ୟାତ୍ମା ଓ କେଉଁମାନେ ପାପୀ ? ସାମୁହିକ ଭାବରେ ସମସ୍ତେ ଭାସିଗଲେ । ମଣିଷର ସୁଖ ବା ଦୁଃଖର ହିସାବ ହୁଏ, ଯେତେଦିନ ସେ ଏହି ଦୁନିଆରେ ବଞ୍ଚିରହେ । ସେ ମୃତ୍ୟୁବରଣ କଲାପରେ ତ ସବୁକିଛି ଶେଷ ହୋଇଯାଉଛି । ତା'ପାଇଁ ସୁଖ ବା ଦୁଃଖର ପ୍ରଶ୍ନ ଉଠୁନାହିଁ । ଉତ୍ତରାଞ୍ଚଳରେ ପ୍ରାଣ ହରାଇଥିବା ଭକ୍ତମାନଙ୍କ ଆୟୁ ସେତିକି ଥିଲା ବୋଲି ଧର୍ମଗୁରୁମାନେ ତର୍କ ଦେଉଛନ୍ତି । କିନ୍ତୁ ଅକାଳ ମୃତ୍ୟୁବରଣ କରିଥିବା ଲୋକମାନଙ୍କର ପରିବାର ଲୋକମାନେ ଯେଉଁ ଦୁଃଖ ଭୋଗ କରୁଛନ୍ତି, ସେମାନଙ୍କ ସୁଖ ଫେରିବାପାଇଁ ଭଗବାନ କେତେ ସମୟ ନେବେ ? ମୃତ ବ୍ୟକ୍ତିମାନେ କ'ଣ କେବେ ଘରକୁ ଫେରି ଆସିବେ ?

ଆୟୁ ଶେଷ ହୋଇଯାଇଥିବା ବିଭିନ୍ନ ବର୍ଗର ନାରୀ ଓ ପୁରୁଷଙ୍କୁ ଦେଶର ବିଭିନ୍ନ ଅଞ୍ଚଳରୁ ଡକେଇ ଆଣି (ଭଗବାନଙ୍କ ଡକରା ନ ପାଇଲେ କେହି ତୀର୍ଥସ୍ଥଳକୁ ଯାଇପାରନ୍ତି ନାହିଁ ବୋଲି ଏକ ବିଶ୍ୱାସ ରହିଛି) ଉତ୍ତରାଞ୍ଚଳରେ ଠୁଳ କରି ସାମୁହିକ ହତ୍ୟା କରି କିଭଳି ନ୍ୟାୟ ପ୍ରଦର୍ଶନ କଲେ ? ଏଇଠି ହତ୍ୟା ଶବ୍ଦ ବ୍ୟବହାର ହୋଇପାରିବନି । କାରଣ ଭଗବାନ କାହାକୁ ହତ୍ୟା କରନ୍ତି ନାହିଁ, ସେ ମୋକ୍ଷ ପ୍ରଦାନ କରନ୍ତି ।

ବିପଦ ସଂକୁଳ ଅଞ୍ଚଳରେ ଫସି ରହିଥିବା ପୁଣ୍ୟାତ୍ମା ଭକ୍ତଙ୍କୁ ଉଦ୍ଧାର କରିବାପାଇଁ ଦେଶର ସୈନ୍ୟବାହିନୀ ଓ ବାୟୁସେନାର ଯବାନ ମାନେ ନିଜ ଜୀବନକୁ ବାଜି ଲଗେଇଥିଲେ । ସୁରକ୍ଷା କର୍ମଚାରୀମାନେ ଯଦି ସାହାଯ୍ୟ କରିନଥା'ନ୍ତେ, ତେବେ ଆହୁରି କିଛି ମଣିଷ ପ୍ରାଣ ହରେଇଥା'ନ୍ତେ । ଉଦ୍ଧାର କାର୍ଯ୍ୟରେ ନିୟୋଜିତ କିଛି ଯବାନ ବି ଏହି ସମୟରେ ପ୍ରାଣତ୍ୟାଗ କରିଛନ୍ତି । ଭଗବାନ କ'ଣ ସେମାନଙ୍କୁ ଏଥିପାଇଁ ଦଣ୍ଡ ଦେଲେ ଯେ "ମୁଁ ପ୍ରାଣଦଣ୍ଡ ଦେଇଥିବା ପାପୀମାନଙ୍କୁ ତୁମେ କାହିଁକି ଉଦ୍ଧାର କରିବାକୁ ଆସିଛ ? ଅପରାଧୀକୁ ସାହାଯ୍ୟ କରିବା ହେଉଛି ଅପରାଧ ।"

ଜୀବନ ବଞ୍ଚେଇ ଘରକୁ ଫେରିଥିବା ଭକ୍ତ କହନ୍ତି - "ଆମେ ଆଠ, ଦଶ ଦିନ ଯେଉଁ ଯନ୍ତ୍ରଣା ଭୋଗକରିଛୁ, ତାହା ଜୀବନସାରା ଭୁଲି ପାରିବୁନି ।" ଅନ୍ଧଶ୍ରଦ୍ଧା

ରଖୁଥିବା ଭକ୍ତମାନେ କହୁଛନ୍ତି, "ଆମକୁ ପରୀକ୍ଷା କରିବାପାଇଁ ଭଗବାନ ଏତେ ଦୁଃଖ ଦେଲେ କିନ୍ତୁ ଶେଷରେ ଆମକୁ ଉଦ୍ଧାର ବି କରିଦେଲେ । ଆସନ୍ତା ବର୍ଷ ଆମେ କେଦାରନାଥଙ୍କୁ କୃତଜ୍ଞତା ଜଣେଇବାପାଇଁ ନିଶ୍ଚୟ ଯିବୁ ।"ଏହା ହେଉଛି ମାନସିକ ଦିବାଲିଆପଣ ।

ସରଳ ବିଶ୍ୱାସୀ ଜନତା ଏତିକି ବୁଝିପାରିଲେ ନାହିଁ, ଯେ ଏହି ବିପର୍ଯ୍ୟୟରୁ ଜୀବନ ନେଇଫେରିବା ଏକ ସଂଯୋଗ ମାତ୍ର । ସେନାବାହିନୀର ଯବାନମାନେ ଯଦି ସାହାଯ୍ୟ କରିନଥାନ୍ତେ, ତେବେ ଏମାନେ ବି ଅନ୍ୟମାନଙ୍କ ଭଳି ସ୍ୱର୍ଗଗାମୀ ହୋଇଥାନ୍ତେ । ଏଇଠି ଭଗବାନକେ ଘର ମେ ଦେର୍ ନହିଁ, ଅନ୍ଧେର୍ ହି ଅନ୍ଧେର୍" ହୋଇଥାନ୍ତା ।

ମଣିଷ ଜୀବନରେ ସମସ୍ୟାର ଅନ୍ତନାହିଁ । କୌଣସି ଗୋଟିଏ ବା ଅନେକ ସମସ୍ୟାରେ ଛନ୍ଦି ହୋଇ ମଣିଷ ମାନସିକ ସ୍ତରରେ ଭାଙ୍ଗିପଡେ । ନିଜକୁ ଅସହାୟ ବୋଧ କରେ । ସେତିକି ବେଳେ ତାକୁ ସମବେଦନା ଜଣେଇ ସାନ୍ତ୍ୱନା ଦେବା ଅତି ଆବଶ୍ୟକ । ସମସ୍ୟାର ସମାଧାନ ଦୃଷ୍ଟିଗୋଚର ହେଉନଥିଲେ ବି ଧୈର୍ଯ୍ୟ ଧରି ବଞ୍ଚିରହିବାକୁ ଅନ୍ୟ ମଣିଷମାନେ ବୁଝେଇଥାନ୍ତି । ଏହା ଏକ ମନସ୍ତାତ୍ତ୍ୱିକ ଚିକିତ୍ସା । ସେହି ସମୟରେ ଭଗବାନଙ୍କ ଭଳି ସର୍ବଶକ୍ତିମାନଙ୍କ ସାହାଯ୍ୟ ପାଇବାକଥା ଯଦି କେହି କହେ, ଦୁଃଖୀ ମଣିଷଟି ବେଶୀ ସାନ୍ତ୍ୱନା ପାଇଥାଏ । ଯଦିଓ ସେହି ଦୈବୀକୃପା ଶୀଘ୍ର ମିଳିଲେ ହିଁ ମଣିଷଟି ଉପକୃତ ହୋଇପାରନ୍ତା, କିନ୍ତୁ ସମସ୍ତେ ଜାଣନ୍ତି, ସେୟା ଘଟିବ ନାହିଁ, ତେଣୁ ନିଜ କଥାକୁ ଠେସ ଦେବାପାଇଁ କହନ୍ତି - "ଭଗବାନ ଡେରିରେ ହେଲେ ବି ତୁମର ଦୁଃଖ ଦୂର କରିଦେବେ ।" ସମୟାନୁକ୍ରମେ ମଣିଷଟି ମାନସିକ ଓ ଶାରୀରିକ ପରିଶ୍ରମ କରି ନିଜର ସମସ୍ୟା ସମାଧାନ କରିଥାଏ । ତା'ର ଦୁଃଖ ଦୂର ହୋଇଗଲେ, ସେ ଭାବେ ଲୋକମାନେ ଯାହା କହୁଥିଲେ ଠିକ୍ କଥା । ଭଗବାନ ଡେରିରେ ହେଲେ ବି ମୋ ଦୁଃଖ ଦୂର କରିଦେଲେ । ସମସ୍ୟାର ସମାଧାନ ପାଇଁ ସେ ଯେଉଁ ପରିଶ୍ରମ କରିଛି କିମ୍ବା ତା'ର ବନ୍ଧୁମାନେ ଯେଉଁ ସହାୟ କରିଛନ୍ତି, ସେଥିପାଇଁ ସେ ନିଜକୁ କିମ୍ବା ବନ୍ଧୁମାନଙ୍କୁ ଧନ୍ୟବାଦ ଜଣେଇବ ନାହିଁ । ସବୁ କ୍ରେଡିଟ୍ ଯିବ ଭଗବାନଙ୍କ ପାଖକୁ । ଭଗବାନ ଯଦି କ୍ରେଡିଟ୍ ନେବାର ଥିଲା ତେବେ ଏତେ ସମୟ ନେଉଥିଲେ କାହିଁକି ?

ଆଉ ଗୋଟିଏ ଉଦାହରଣ ଦେଖିବା - ଭଗବାନଙ୍କ ଘରେ ଡେରି ହେବା ଫଳରେ ଗତ ମାର୍ଚ୍ଚ ୨୫ ତାରିଖ ୨୦୧୩ରେ କିପରି ଗୋଟିଏ ପରିବାରର ପାଞ୍ଚଜଣ ଭକ୍ତଙ୍କ ଅକାଳ ମୃତ୍ୟୁଘଟିଲା । (ଗତ ମାର୍ଚ୍ଚ ୩୦ତାରିଖ ୨୦୧୩ର ଟାଇମସ୍ ଅଫ୍ ଇଣ୍ଡିଆ ଦ୍ରଷ୍ଟବ୍ୟ) ଘଟଣାଟି ହେଉଛି ରାଜସ୍ଥାନର ସୱାଇମାଧୋପୁର ଅଞ୍ଚଳରେ ବାସ କରୁଥିବା ଜଣେ ଶିବଭକ୍ତ କାଞ୍ଚନ ସିଂହ ଓ ତାଙ୍କର ପରିବାରର ସାତଜଣ ସଦସ୍ୟ ଗତ ପାଞ୍ଚବର୍ଷ ଧରି, ନିଜ ଶରୀରରୁ ଇଞ୍ଜେକସନ ସିରିଞ୍ଜ୍ ସାହାଯ୍ୟରେ ରକ୍ତ ବାହାର କରି ତିନିହଜାର ଏକଶହଥର ଶିବଲିଙ୍ଗକୁ ରକ୍ତସ୍ନାନ କରାଇ ଆହୁତି ଦେଉଥିଲେ । ତଥାପି ଭକ୍ତବତ୍ସଳ, ପରମଦୟାଳୁ ମହାଦେବଙ୍କର ମନ ତରଳିଲା ନାହିଁ । କାଞ୍ଚନ ସିଂହଙ୍କ ମନୋବାଞ୍ଛା ପୂରଣ ନ ହେବାରୁ ସେ ଅତିମାତ୍ରାରେ ହତାଶ ହୋଇ ପରିବାରର ସମସ୍ତଙ୍କୁ ବିଷମିଶ୍ରିତ ଲଡୁ ଖୁଆଇ ନିଜେ ବି ଖାଇଦେଲେ । ଖବର ପ୍ରକାଶିତ ହେବାବେଳକୁ ପାଞ୍ଚଜଣ (ତିନିଜଣ ଶିଶୁଙ୍କ ସମେତ) ପ୍ରାଣତ୍ୟାଗ କରିସାରିଥିଲେ । ବାକି ତିନିଜଣ ଡାକ୍ତରଖାନାରେ ମୃତ୍ୟୁସହ ସଂଘର୍ଷ କରୁଥିଲେ ।

ଭୋଳାନାଥ ଶିବ ଯଦି ତାଙ୍କର ଏହି ଭୋଳା ଭକ୍ତଟିକୁ ପାଞ୍ଚବର୍ଷ ଭିତରେ ଥରୁଟିଏ ବି କୃପା ପ୍ରଦର୍ଶନ କରିଥା'ନ୍ତେ, ତେବେ ସେମାନେ ଏଭଳି ଚରମ ପଦକ୍ଷେପ ନେଇନଥାନ୍ତେ । ଭଗବାନଙ୍କ ଘରେ ଆଲୋକ ଜଳିବା ଆଶାରେ କାଞ୍ଚନ ସିଂହଙ୍କ ଘର ତ ସବୁଦିନ ପାଇଁ ଅନ୍ଧକାର ହୋଇଗଲା ।

ମଣିଷ ନିଜର ଉତ୍ତରଦାୟିତ୍ୱ ଏବଂ ସାମାଜିକ ପ୍ରତିବଦ୍ଧତାକୁ ଠିକ୍ ରୂପେ ପାଳନ ନ କରି ଯଦି ଭଗବାନଙ୍କ ଇଚ୍ଛା ଉପରେ ନିର୍ଭର କରି ରହିବ ତେବେ ସେ କେବେ ବି ଆଶାନୁରୂପ ସଫଳତା ହାସଲ କରିପାରିବନାହିଁ । କେବଳ ଆତ୍ମପ୍ରବଞ୍ଚନା କରି କହି ବୁଲୁଥିବା - "ଭଗବାନକେ ଘର ମେଁ ଦେର୍ ହୈ.. ଅନ୍ଧେର୍ ନହିଁ ।

*******

# ପ୍ରଚଳିତ ପ୍ରବଚନ ବନାମ ହେତୁବାଦୀ ବଚନ

ଅନ୍ୟାନ୍ୟ ଦେଶଭଳି ଆମ ଦେଶରେ ବି ଆଦିମ କାଳରୁ ବିଭିନ୍ନ ପ୍ରବାଦ ଓ ପ୍ରବଚନ ପ୍ରଚଳିତ ହୋଇ ଆସିଛି । ଆମେ ଏଇଠି କିଛି ପ୍ରଚଳିତ ଲୋକ ପ୍ରବଚନକୁ ହେତୁବାଦୀ ମତରେ ବିଚାର କରିବା । ପ୍ରବଚନ ଗୁଡିକ ତର୍କ ସଂଗତ ଲାଗୁନାହିଁ କିମ୍ବା ବିରୋଧାଭାସ ସୃଷ୍ଟି କରୁଛି କାହିଁକି ?

୧) "କପାଳ ଲିଖନ କେ କରିବ ଆନ" ଅର୍ଥାତ୍ ପ୍ରତ୍ୟେକ ମନୁଷ୍ୟର କପାଳ ବା ଭାଗ୍ୟରେ ପୂର୍ବରୁ (ଜନ୍ମ ପୂର୍ବରୁ ନା'ପରେ ଜଣାନାହିଁ) ଯାହା ନିର୍ଦ୍ଧାରଣ କରି ତଥାକଥିତ ଈଶ୍ୱର ଲେଖିଦେଇଛନ୍ତି, ତାହାକୁ କେହି ବି ବଦଳେଇ ପାରିବନାହିଁ । ତାହା ଅବଶ୍ୟ ଫଳିବ ।

ହେତୁବାଦୀ ମତ :- ଏହା ଯଦି ସତ ବୋଲି ମାନିବା ତେବେ ଆସନ୍ତୁ ଆଗେ କେତୋଟି ଉଦାହରଣକୁ ପରୀକ୍ଷା କରି ବିଚାର କରିବା ଯେ ଈଶ୍ୱରଙ୍କ ଦ୍ୱାରା ଭାଗ୍ୟ ନିର୍ଦ୍ଧାରଣ କେତେ ଦୂର ସତ୍ୟ ?

(କ) ଗୋଟିଏ ଶିଶୁ ଡାକ୍ତରଖାନାରେ ଜନ୍ମ ହେଲା । ସୁଯୋଗ ଦେଖି ଗୋଟିଏ ଚୋର ଶିଶୁଟିକୁ ନେଇ ଫେରାର ହୋଇଗଲା । ଏହି ଦୁର୍ଘଟଣାପାଇଁ ଅନେକ ଲୋକଙ୍କୁ ଦାୟୀ କରାଯାଇପାରିବ । ପ୍ରଥମେ ଶିଶୁର ମାଁଆ କାହିଁକି ଏତେ ବେପରୁଆ ହେଲା କୁହାଯିବ । ଦ୍ୱିତୀୟରେ ଡାକ୍ତରଖାନାର ସୁରକ୍ଷା ବ୍ୟବସ୍ଥାକୁ ଦାୟୀ କରାଯିବ । ତୃତୀୟରେ ଆମ ସମାଜର ନୈତିକ ପତନକୁ ଦୋଷ ଦେଇ ହେବ । ଶେଷରେ ଚୋରକୁ ଦୋଷ ଦିଆଯିବ । ଚୋର ଓ ଶିଶୁଟିକୁ ଠାବ କରିବାପାଇଁ ପୋଲିସ ଅନୁସନ୍ଧାନ ଆରମ୍ଭ କରିଦେବ ।

ଉପରୋକ୍ତ ଘଟଣାକ୍ରମରେ ଆମେ ଦେଖୁଛୁ ଯେ ଈଶ୍ୱରଙ୍କ ଭୂମିକା ତ କେଉଁଠି ବି ଅନୁଭୂତ ହେଉନାହିଁ ।

ଏଇଠି ପ୍ରଶ୍ନ ଉଠୁଛି - ଯଦି ଶିଶୁର ଭାଗ୍ୟରେ ଲେଖା ହୋଇଥିବ ଯେ ଜନ୍ମ ହେବାପରେ ମାଆଠାରୁ ଅଲଗା ହୋଇଯିବ ଏବଂ ଚୋରର ଭାଗ୍ୟରେ ଲେଖା

ହୋଇଥିବ ଯେ ତୁ ସେହି ଶିଶୁଟିକୁ ମାଆଠାରୁ ଅଲଗା କରିବା କାମ କରିବୁ, ତେବେ ଚୋରର ଦୋଷ ରହିଲା କେଉଁଠି ? ପୋଲିସ ଯଦି ଚୋରକୁ ଠାବ କରି ଦଣ୍ଡ ବିଧାନ କରିବ, ତେବେ ଈଶ୍ୱରଙ୍କ ଭାଗ୍ୟ ନିର୍ଦ୍ଧାରଣର ଅବମାନନା ହେବ ନାହିଁକି ?

(ଖ) ଜଣେ ବ୍ୟକ୍ତିର ହତ୍ୟା ଯୋଗୁଁ ମୃତ୍ୟୁ ଘଟିଲା । ଅନ୍ୟଜଣେ ବ୍ୟକ୍ତି ଉକ୍ତ ବ୍ୟକ୍ତିଟିକୁ ହତ୍ୟା କଲା ? ଏହି ଅନୁସନ୍ଧାନ କରିବେ ମଣିଷମାନେ । ଏଇଠି ବି ଈଶ୍ୱରଙ୍କ ଭୂମିକା ରହୁଥିବା ଆମେ ଦେଖୁନାହୁଁ ।

ସେହି ଏକା ପ୍ରଶ୍ନ ଉଠୁଛି - ଯଦି ମୃତ ବ୍ୟକ୍ତି ଭାଗ୍ୟରେ ହତ୍ୟା ଯୋଗ ଏବଂ ହତ୍ୟାକାରୀ ଭାଗ୍ୟରେହତ୍ୟା କରିବାପାଇଁ ନିର୍ଦ୍ଦେଶ ଲେଖାଥିବ, ତେବେ ମଣିଷ ଅଯଥା ନିଜର ସମୟ ଶକ୍ତି ଖର୍ଚ୍ଚକରି ହତ୍ୟାକାରୀକୁ ଧରିଆଣି ଦଣ୍ଡ ଦେଉଛି କାହିଁକି ?

ଶିଶୁକୁ ଚୋରି କରିବା ଏବଂ ମଣିଷକୁ ହତ୍ୟା କରିବା ଯଦି ଅପରାଧ ଶ୍ରେଣୀରେ ଗଣନା କରାଯିବ, ତେବେ ତଥାକଥିତ ଈଶ୍ୱର ହିଁ ଉଭୟ କ୍ଷେତ୍ରରେ ଅପରାଧି ହେବେ । କାରଣ ସେ ହିଁ ପୂର୍ବରୁ ଏହି ସବୁ ଘଟଣା ନିର୍ଦ୍ଧାରଣ କରି ସାରିଛନ୍ତି ଏବଂ ତାଙ୍କରି ନିର୍ଦ୍ଦେଶ କ୍ରମେ ସବୁ ଘଟିଛି ।

(୨) କରି କରାଯାଉଥାଏ ମୁହିଁ ମୋ ବିନୁ ଅନ୍ୟ ଗତି ନାହିଁ ।" ଏହି ପ୍ରବଚନ ଦ୍ୱାରା ଉପରେ ବର୍ଣ୍ଣିତ ଦୁଇଟି ଘଟଣାକୁ ଆହୁରି ସ୍ପଷ୍ଟଭାବେ ପ୍ରତିପାଦନ କରୁଛି ଯେ ଆମେ ଯାହାକୁ ଭଲ ବା ମନ୍ଦକର୍ମ ବୋଲି କହୁଛୁ, ସେ ସବୁ କର୍ମ କେବଳ ଈଶ୍ୱର ହିଁ କରୁଛନ୍ତି କିମ୍ବା କରାଯାଉଛନ୍ତି । ମଣିଷ ନିମିତ୍ତ ମାତ୍ର ।

ଧର୍ମଶାସ୍ତ୍ରରେ ଲେଖାଅଛି - "ଈଶ୍ୱରଙ୍କ ଇଚ୍ଛା ବିନା ଗଛର ପତ୍ର ବି ହଲିବ ନାହିଁ ।" ଅନ୍ୟ ଏକ ଜାଗାରେ ଲେଖାଅଛି- "ଈଶ୍ୱର ମନୁଷ୍ୟର କର୍ମ ଅନୁସାରେ ଦଣ୍ଡ କିମ୍ବା ଫଳ ଦେଇଥାନ୍ତି ।" ଏହା ଏକ ବିରୋଧାଭାସ ନୁହେଁ କି ? ଈଶ୍ୱରଙ୍କ ଇଚ୍ଛାରେ ଯଦି ସବୁ କର୍ମ ହେଉଛି ତେବେ ମଣିଷପାଇଁ କର୍ମ ରହିଲା କେଉଁଠି ? ଈଶ୍ୱର ନିର୍ଦ୍ଧାରିତ କର୍ମପାଇଁ ମଣିଷ ଦଣ୍ଡ କିମ୍ବା ଫଳ ପାଇବାର ପ୍ରାବଧାନ ରହିବ କାହିଁକି ?

ଏଇଠି ମଣିଷର କର୍ମବାଦ ଉପରେ ବି ପ୍ରଶ୍ନ ଉଠିଛି । ପୂର୍ବ ଜନ୍ମରେ କରିଥିବା କର୍ମର ଫଳ ଏହି ଜନ୍ମରେ ମିଳିବ ଏବଂ ଏହି ଜନ୍ମରେ କରିଥିବା କର୍ମର ଫଳ ଆସନ୍ତା ଜନ୍ମରେ ମିଳିବ କାହିଁକି ?

ହେତୁବାଦୀ ମତ :- ପ୍ରଥମକଥା ହେଉଛି ଯେ ପ୍ରାକୃତିକ ନିୟମ ଅନୁସାରେ ସଂସାରର ସମସ୍ତ କର୍ମ ସଂପାଦନ ହେଉଛି । ରାତି, ଦିନ, ଖରା, ବର୍ଷା, ଶୀତ, ଝଡ, ବନ୍ୟା, ଭୂମିକମ୍ପ ଆଦି ପ୍ରକୃତିର କର୍ମ । ସେଗୁଡ଼ିକ କୌଣସି ଦୈବୀଶକ୍ତି ଦ୍ୱାରା ନିୟନ୍ତ୍ରଣ ହୋଇ ନଥାଏ । ଦ୍ୱିତୀୟକଥା ହେଉଛି ଯେ ପୁନର୍ଜନ୍ମ ତଥ୍ୟ ବିଜ୍ଞାନ ସମ୍ମତ ନୁହେଁ । ଏପରିକି ଶାସ୍ତ୍ରମାନଙ୍କରେ ବର୍ଣ୍ଣନା କରାଯାଇଥିବା ପୁନର୍ଜନ୍ମବାଦ ବି ଅନେକ ବିରୋଧାଭାସ ସୃଷ୍ଟି କରୁଛି ।

କେଉଁଠି ୮୪ଲକ୍ଷ ଯୋନୀରେ ଆତ୍ମା ଜନ୍ମଗ୍ରହଣ କରୁଥିବା କଥା ଲେଖା ହୋଇଛି ତ କେଉଁଠି ମଣିଷ କେବଳ ମାତ୍ର ସାତଜନ୍ମ ପାଇଁ ସ୍ୱାମୀ ଓ ସ୍ତ୍ରୀର ବନ୍ଧନଲାଗି ରହୁଥିବା କଥା ଲେଖାଅଛି । ଏଇଠି ପ୍ରଶ୍ନ ଉଠୁଛି - ମଣିଷ ନିଜର କୃତକର୍ମ ଅନୁସାରେ ୮୪ଲକ୍ଷ୍ୟ ଯୋନୀରୁ ଜନ୍ମ ହେବାର ଯଦି ବିଧାନ ଅଛି, ତେବେ ଜଣେ ପୁରୁଷ ବା ସ୍ତ୍ରୀଙ୍କ ସାତଜନ୍ମ କେବଳ ମଣିଷ ଜାତିରେ ହିଁ ହେଉଛି ନା ଅନ୍ୟ ପଶୁ, ପକ୍ଷୀ, କୀଟ, ପତଙ୍ଗ ଜାତିରେ ହେଉଛି ? ଯଦି ଜଣେ ବ୍ୟକ୍ତି ପୂର୍ବ ଜନ୍ମରେ ପଶୁ ଜାତିରେ ଜନ୍ମ ଗ୍ରହଣ କରି ମନ୍ଦକର୍ମ କରିଥିଲା, ତେବେ ଏକି ଜନ୍ମରେ ମଣିଷ ଭାବେ ଜନ୍ମ ନେଇଦଣ୍ଡ ଭୋଗ କରିବ କାହିଁକି ? କର୍ମବାଦରେ ଏହି ତଥ୍ୟ ବି ସ୍ପଷ୍ଟ ହୋଇପାରୁନାହିଁ ।

୩) ବର କନ୍ୟାଙ୍କ ଯୋଡି ସ୍ୱର୍ଗରେ ନିର୍ଦ୍ଧାରିତ ହୋଇଥାଏ :-

ଏହା ଯଦି ସତ ହୋଇଥାଏ, ତେବେ ପ୍ରଶ୍ନ ଉଠିଛି ଯେ ସ୍ୱର୍ଗରେ ଦେବତାଙ୍କ ଦ୍ୱାରା ନିର୍ଦ୍ଧାରଣ କରାଯାଇଥିବା ଯୋଡିଙ୍କ ବିବାହ ଗଣନା ଭୁଲ ହୋଇଯାଉଛି କାହିଁକି ? ବିବାହ ପୂର୍ବରୁ ପୁଣିଥରେ ଜ୍ୟୋତିଷମାନେ ଜାତକ ଗଣନା କରୁଛନ୍ତି କାହିଁକି ? ସ୍ୱର୍ଗର ଦେବତା ଓ ମର୍ତ୍ତ୍ୟର ପଣ୍ଡିତମାନଙ୍କ ଦ୍ୱାରା ଗଣନା କରି ବିବାହ କରିଥିବା ଦମ୍ପତି ଆଜୀବନ ସୁଖ ଶାନ୍ତିରେ ବାସକରି ପାରୁନାହାଁନ୍ତି କାହିଁକି ? ବାସ୍ତବିକ

ଜୀବନରେ ଅନେକ ପରିବାରର ଦାମ୍ପତ୍ୟ କଳହ, ବିବାହ, ବିଚ୍ଛେଦ, ଅକାଳ ବୈଧବ୍ୟ ଆଦି ଦୋଷ ଦେଖିବାକୁ ମିଳୁଛି କାହିଁକି ?

ହେତୁବାଦୀ ମତ :- ମଣିଷମାନେ ଆଦିମ କାଳରେ ବଣ ଜଙ୍ଗଲରେ ବାସ କରୁଥିଲେ। ଅନ୍ୟାନ୍ୟ ପଶୁମାନଙ୍କ ଭଳି ସେମାନେ ବି ମୁକ୍ତଭାବେ ଯେକୌଣସି ସ୍ତ୍ରୀ ଓ ପୁରୁଷଙ୍କ ସହିତ ଯୌନ ଜୀବନ ଉପଭୋଗ କରୁଥିଲେ। ସେତେବେଳେ ଏକ ପତ୍ନୀ ବା ଏକ ପତିର ପ୍ରଥା ନଥିଲା। କାରଣ ସ୍ୱର୍ଗରେ କୌଣସି ଦାମ୍ପତ୍ୟ ଯୋଡି ତିଆରି ହେଉ ନଥିଲା କିମ୍ବା ତଥାକଥିତ ଈଶ୍ୱରଙ୍କ କୌଣସି ନିୟନ୍ତ୍ରଣ ନଥିଲା। ପରବର୍ତ୍ତୀ କାଳରେ ମଣିଷ ବିକାଶ ଲାଭ କରି ସମାଜକୁ ଶୃଙ୍ଖଳିତ କରିବାପାଇଁ ଉନ୍ମୁକ୍ତ ଯୌନ ଜୀବନକୁ ନିୟନ୍ତ୍ରଣ କରି ବିବାହ ପ୍ରଥା ସୃଷ୍ଟି କରିଥିଲା। ପରିବାର ଗଠନ ହେବାରୁ ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା, କର୍ତ୍ତବ୍ୟ ନିଷ୍ଠା ଓ ଉତ୍ତରଦାୟିତ୍ୱ ରହିଲା। ଯେଉଁ ପରିବାର ଲୋକମାନଙ୍କ ଭିତରେ ଉପରୋକ୍ତ ମାନବୀୟ ସଦ୍‌ଗୁଣ ଗୁଡିକର ଅଭାବ ରହିଲା, ସେଇଠି ସ୍ୱାର୍ଥପରତା ଓ ଅହଂଭାବ ଯୋଗୁଁ ମତାନ୍ତର ଘଟିଲା। ଯାହାର ପରିଣାମ ହେଉଛି ଗୃହଯୁଦ୍ଧ ଏବଂ ବିଘଟନ।

୪) ମାନିଲେ ଠାକୁର ନ ମାନିଲେ ପଥର ଏହି ପ୍ରବଚନ ଏକ ବିରୋଧାଭାସ ନୁହେଁ କି ? ଯଦି ଠାକୁର ସତ୍ୟ ଏବଂ ଚିରନ୍ତନ, ତେବେ ଠାକୁରଙ୍କୁ ମାନିବା ନ ମାନିବାର ପ୍ରଶ୍ନ ଉଠୁଛି କେଉଁଠି ?

ହେତୁବାଦୀ ମତ :- ପ୍ରକୃତିର ବିଭିନ୍ନ ସ୍ୱରୂପ ଯଥା :- ସୂର୍ଯ୍ୟ, ଅଗ୍ନି, ପାଣି, ପବନ ଇତ୍ୟାଦିର ଥିବା ଶକ୍ତିକୁ ଆମେ ଅସ୍ୱୀକାର କରିପାରିବା ନାହିଁ। କାରଣ ସେଗୁଡିକୁ କେହି ନ ମାନିଲେ ବି ସେ ସବୁ ବିଦ୍ୟମାନ ରହିବେ। ତଥାକଥିତ ଠାକୁର ଯେହେତୁ ମଣିଷର କଳ୍ପନା ପ୍ରସୂତ ଶକ୍ତି ତେଣୁ ମନ୍ଦିର ଓ ଧର୍ମସ୍ଥଳମାନଙ୍କରେ କାଠ, ପଥର ଓ ଧାତୁ ନିର୍ମିତ ନିର୍ଜୀବ ମୂର୍ତ୍ତିକୁ ସ୍ଥାପନ କରି ମାନସିକ ସ୍ତରରେ ମାନିବାପାଇଁ ବାଧ୍ୟ କରାଯାଇଛି। ଏହି ପ୍ରଥା ଏତେ ସୁଚିନ୍ତିତ ଢଙ୍ଗରେ ତିଆରି ହୋଇଛି ଯେ ଏହାର ପ୍ରଭାବରେ ଯୁଗଯୁଗ ଧରି ଗୋଟିଏ ବୁଦ୍ଧିଆ ଗୋଷ୍ଠୀର ମଣିଷମାନେ ଅନ୍ୟ ସମସ୍ତ ଗୋଷ୍ଠୀର ମଣିଷ ମାନଙ୍କୁ ମାନସିକ ଦୋହନ ତଥା ଆର୍ଥିକ ଶୋଷଣ କରି ଆସୁଛନ୍ତି।

ଅର୍ଥାତ୍ ବିନା ପୁଞ୍ଜି ଓ ପରିଶ୍ରମରେ ଅଜସ୍ରଧନ ସଂଗ୍ରହର ସୁଗମ ବାଟ ଖୋଲି ରଖିଛନ୍ତି । ଉଦାହରଣ ସ୍ୱରୂପ ଆଜି ଆମେ ଦେଖୁଛୁ ଦେଶର ହଜାର ହଜାର ଧର୍ମସ୍ଥଳମାନଙ୍କରେ ବେହିସାବ ମାତ୍ରାରେ ସୁନା, ରୂପା, ହୀରା ଓ ଟଙ୍କା ଜମା ହୋଇରହିଛି । ଅନ୍ୟ ଦିଗରେ ଦେଶର ଅଧିକାଂଶ ଜନତା ଦୁଃଖ ଓ ଦାରିଦ୍ର୍ୟ ଭିତରେ ପଡି ମରୁଛନ୍ତି । ଏହାର ଅର୍ଥ ହେଉଛି "ଧନୀ ଭଗବାନଙ୍କ ଗରିବ ଭକ୍ତ ।" ଭକ୍ତମାନେ ପଥରକୁ ବିଶ୍ୱାସ କରି କଷ୍ଟ ଉପାର୍ଜିତ ଧନକୁ ଦାନକରି ସିଧାସିଧା ପ୍ରତିଦାନ କିଛି ନ ପାଇଲେ ବି ଭବିଷ୍ୟତରେ କିମ୍ବା ଆସନ୍ତାଜନ୍ମରେ ପାଇବାର ଆଶ୍ୱାସନାକୁ ନେଇ ମୃତ୍ୟୁପର୍ଯ୍ୟନ୍ତ ଅପେକ୍ଷା କରିଥା'ନ୍ତି । ଏହା ଏକ ବିଡମ୍ବନା ନୁହେଁ କି ?

୫) "ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର" କିମ୍ବା "ଯାହାର ବିଶ୍ୱାସ ଯେତେ, ତାହାର ଈଶ୍ୱର ସେତେ ।"

ଏହି ଦୁଇଟି ପ୍ରବଚନର ଅର୍ଥ ଏକା । ବିଶ୍ୱାସ କଲେ ହରିଙ୍କ କୃପା ହେବ, ଅବିଶ୍ୱାସ କରି ତର୍କକଲେ ହରି ଦୂରେଇ ଯିବେ ।"

ହେତୁବାଦୀ ମତ : ଏହି ଦୁନିଆରେ ଯାହା ପ୍ରତ୍ୟେକ୍ଷ ବା ପରୋକ୍ଷରେ ଅନୁଭୂତ ହେଉଛି, ତାହା ଉପରେ କାହାରି ସଂଦେହ ରହୁନାହିଁ । କିନ୍ତୁ ଯାହା ବିଦ୍ୟମାନ ଥିବାର ଦାବି କରାଯାଉଛି କିନ୍ତୁ ପ୍ରମାଣ କରାଯାଇ ପାରୁନାହିଁ ତାହାରି ଉପରେ ତର୍କ ହେଉଛି ।

*******

# ଧର୍ମନିରପେକ୍ଷ ନୀତି ଧର୍ମକୁ ଆଖିଠାର

ଆମ ଦେଶର ସମ୍ବିଧାନ ଅନୁସାରେ ସରକାର ଧର୍ମନିରପେକ୍ଷ ହେବା ଉଚିତ। ଅର୍ଥାତ୍ ପ୍ରଶାସନ କୌଣସି ଧର୍ମ ପ୍ରତି ପକ୍ଷପାତ କିମ୍ବା ଭେଦଭାବ ପ୍ରଦର୍ଶନ କରିବ ନାହିଁ। ସମସ୍ତ ଧର୍ମକୁ ସମାନ ଭାବେ ସମ୍ମାନ କରିବ।

ଅପର ପକ୍ଷେ, ଆମର ପ୍ରଚଳିତ ସାମାଜିକ ବ୍ୟବସ୍ଥା ଓ ପ୍ରଶାସନର କାର୍ଯ୍ୟଶୈଳୀକୁ ଅନୁଧ୍ୟାନ କଲେ ମନରେ ପ୍ରଶ୍ନ ଉଠେ-ଦେଶର ବା ରାଜ୍ୟର ଏହି ଧର୍ମ ନିରପେକ୍ଷ ନୀତି କ'ଣ ବାସ୍ତବରେ କାମ କରୁଛି ? ବିଭିନ୍ନ ଧର୍ମ ଭିତରେ କ'ଣ ପକ୍ଷପାତ ହେଉନାହିଁ ? ଆସନ୍ତୁ କିଛି ଉଦାହରଣ ଦେଖିବା।

ଆମ ଦେଶରେ ପ୍ରାୟ ୧୬୦୦ ଛୋଟବଡ ଧର୍ମ ରହିଛି ବୋଲି କୁହାଯାଏ। କିନ୍ତୁ ସରକାରଙ୍କ ଛୁଟି ତାଲିକାରେ କେବଳ ଅଳ୍ପ କିଛି ବଡ ବଡ ଧର୍ମ ସଂପ୍ରଦାୟଙ୍କ ବିଶେଷ ପର୍ବ ଦିନ ପାଇଁ ଛୁଟି ଘୋଷଣା ହେଉଛି । ଅନ୍ୟ ସମସ୍ତ ଲଘୁ ସଂପ୍ରଦାୟଙ୍କ ପାଇଁ ସରକାରୀ ଛୁଟି ନଥାଏ। ଏହା ସରକାରଙ୍କ ଧାର୍ମିକ ପକ୍ଷପାତ ନୁହେଁ କି ?

କିଛି ଧର୍ମର ଭକ୍ତମାନଙ୍କୁ ତୀର୍ଥସ୍ଥଳ ଭ୍ରମଣପାଇଁ ସ୍ୱତନ୍ତ୍ର ସରକାରୀ ସୁବିଧା ଓ ସହାୟତା ମିଳୁଛି। ଯଥା : ହଜ୍ ଯାତ୍ରୀ ଓ ଅମରନାଥ ଯାତ୍ରୀ। ଅନ୍ୟ ଛୋଟ ଛୋଟ ଧର୍ମର ଶ୍ରଦ୍ଧାଳୁଙ୍କୁ ଏହି ସୁବିଧା ପ୍ରାୟ ଦିଆଯାଏ ନାହିଁ ? ସରକାରୀ ଜମି କିମ୍ବା ସଡ଼କ କଡ଼ରେ ରାତାରାତି ଗଢି ଉଠୁଥିବା କୌଣସି ସଂଖ୍ୟା ଗରିଷ୍ଠ ଧର୍ମ ସଂପ୍ରଦାୟ ଦେବୀ ଦେବତାଙ୍କ ମନ୍ଦିରକୁ ହଟେଇବା କିମ୍ବା ଅବୈଧ ନିର୍ମାଣ ଘୋଷଣା କରିବା, ପ୍ରଶାସନପାଇଁ ସହଜ ହୋଇ ନଥାଏ। ଲଘୁ ସଂପ୍ରଦାୟଙ୍କ ମନ୍ଦିରକୁ ସହକରେ ହଟେଇ ଦିଆଯାଏ।

ଆଇନ୍ ଅନୁସାରେ କାହାରି ଧାର୍ମିକ ଭାବନାକୁ ଆଘାତ କରିବା ଏକ ଦଣ୍ଡନୀୟ ଅପରାଧ। ଦେଶରେ ଏହି ଆଇନ୍ ବଳରେ ଅନେକ ବ୍ୟକ୍ତି ଓ ସଂଗଠନ ଉପରେ ଅନେକ ବ୍ୟକ୍ତି ଓ ସଂଗଠନ ଉପରେ କେଶ୍ ଚାଲୁଛି। କିନ୍ତୁ ନୀରିଶ୍ୱରବାଦୀ

(ଯେଉଁମାନେ କୌଣସି ଧର୍ମକୁ ବିଶ୍ୱାସ କରୁନାହାଁନ୍ତି) ମାନଙ୍କ ମାନବବାଦୀ ବିଶ୍ୱାସକୁ ଆଘାତ କରୁଥିବା ବ୍ୟକ୍ତି କିମ୍ବା ସଂପ୍ରଦାୟ ବିରୁଦ୍ଧରେ ଆଇନଗତ କାର୍ଯ୍ୟାନୁଷ୍ଠାନ କରିବାପାଇଁ ସରକାର ଆଇନ୍ ତିଆରି କରୁନାହାଁନ୍ତି କାହିଁକି ?

ଏହାର ବିପରୀତ ହେତୁବାଦୀ ବୁଦ୍ଧିଜୀବୀମାନଙ୍କୁ "ନାସ୍ତିକ" ବୋଲି କହନ୍ତି। ଧର୍ମଶାସ୍ତ୍ରରେ ଲେଖାଅଛି ନାସ୍ତିକମାନଙ୍କୁ ହତ୍ୟା କଲେ ପାପ ହେବ ନାହିଁ। ବାବା ଫରୀଦ କହିଥିଲେ "ଯେଉଁ ଲୋକ ସାଇଙ୍କ ଆଗରେ ମୁଣ୍ଡ ନୁଆଁଏ ନାହିଁ, ତାକୁ ଶୁଖିଲା କାଠ ଭଳି ଚୂଲିରେ ପୁରେଇ ଦେବା ଉଚିତ।" ଏହିଭଳି ମନ୍ତବ୍ୟ କ'ଣ ଦେଶର ଅସଂଖ୍ୟ ନୀରିଶ୍ୱରବାଦୀଙ୍କ ଭାବନାକୁ ଆଘାତ କରୁନାହିଁ ? ନୀରିଶ୍ୱରବାଦୀଙ୍କ ଭାବନାକୁ ଆଘାତ କରୁଥିବା ବ୍ୟକ୍ତି ବା ସଂପ୍ରଦାୟଙ୍କୁ ଦଣ୍ଡ ଦେବପାଇଁ କୌଣସି ଆଇନ ତିଆରି ହୋଇନାହିଁ। ଏହା ସରକାରଙ୍କ ଧର୍ମ ନିରପେକ୍ଷ ନୀତିର ବିରୋଧାଭାସ ନୁହେଁ କି ? କେତେକ ରାଜ୍ୟର ବିଧାନସଭାରେ ନିର୍ବାଚିତ ଜନପ୍ରତିନିଧିମାନେ ନିଜ ନିଜର ଧର୍ମୀୟ ବିଶ୍ୱାସ ଅନୁସାରେ ଶପଥ ପାଠ କରୁଛନ୍ତି। ଏହା ସେମାନଙ୍କର ବ୍ୟକ୍ତିଗତ ଅଧିକାର ହିସାବରେ ରାଜ୍ୟ ସରକାର ମାନ୍ୟତା ଦେଇଥା'ନ୍ତି। ଏଇଠି ପ୍ରଶ୍ନ : ଏହା ନୁହେଁ ଯେ କିଏ କେଉଁ ଧର୍ମକୁ ସାକ୍ଷୀ ରଖି ଶପଥ ପାଠ କଲେ। ଅସଲ ପ୍ରଶ୍ନ ହେଉଛି - ସରକାର ମାନ୍ୟତା ଦେବା ଅର୍ଥ ଧର୍ମରେ ହସ୍ତକ୍ଷେପ କରିବା ନୁହେଁ କି ? ସମସ୍ତେ ଦେଶର ସମ୍ବିଧାନ ନାମରେ ଶପଥ ପାଠ କରିବେ ନାହିଁ କାହିଁକି ? ଯେଉଁଭଳି କୋର୍ଟରେ ଦୋଷୀ ନିଜ ଧର୍ମଗ୍ରନ୍ଥକୁ ଛୁଇଁ ଶପଥ ପାଠ କରି କହେ - "ଯାହା କହିବି ସତ କହିବି" ଯଦି ଦଣ୍ଡ ବିଧାନ ହେବ ସମ୍ବିଧାନ ଅନୁସାରେ, ତେବେ ସେ ସମ୍ବିଧାନକୁ ଛୁଇଁ ଶପଥ ନେଲେ କ୍ଷତି କ'ଣ ? ଧର୍ମଗ୍ରନ୍ଥକୁ ଛୁଇଁ ସତ କହିବାକୁ ଶପଥ କଲେ ମଧ୍ୟ ଯଦି ସେ ମିଛ କହିଥାଏ, ଆଇନ ତ ତା' କଥାକୁ ବିଶ୍ୱାସ କରି କ୍ଷମା କରେ ନାହିଁ। ତା'ହେଲେ ଧର୍ମର ପ୍ରହସନ କରାଯାଉଛି କାହିଁକି ?

ସମସ୍ତେ ଜାଣନ୍ତି, ସୈନ୍ୟ ଛାଉଣୀ, ପୋଲିସ ଥାନା, କୋର୍ଟ କଚେରୀ, ସ୍କୁଲ, କଲେଜ, ଡାକ୍ତରଖାନା ଓ ସାର୍ବଜନିକ ସ୍ଥଳର ହତା ଭିତରେ ବିଭିନ୍ନ ଦେବୀ,

ଦେବତାଙ୍କ ପୂଜାସ୍ଥଳ ତିଆରି ହୋଇଛି । ତାହା କେବଳ କିଛି ବଡ ବଡ ଧର୍ମର ଦେବୀ, ଦେବତାଙ୍କପାଇଁ ଉଦ୍ଦିଷ୍ଟ । ଅନ୍ୟ ଛୋଟ ଛୋଟ ଧର୍ମର ଶ୍ରଦ୍ଧାଳୁ କରିବେ କ'ଣ ? ସମସ୍ତଙ୍କୁ ନିଜ ନିଜର ଆସ୍ଥା ଅନୁସାରେ ପୂଜା ଅର୍ଚ୍ଚନା କରିବା ଅଧିକାର ତ ମିଳିବା ଉଚିତ । ସରକାର କେବଳ କିଛି ବିଶେଷ ଧର୍ମସ୍ଥଳ ନିର୍ମାଣ କରିବାକୁ ଅନୁମତି ଦେବା ଧାର୍ମିକ ପକ୍ଷପାତ ନୁହେଁ କି ?

ପଞ୍ଜାବରେ ଫରୀଦକୋର୍ଟ ଜିଲ୍ଲା ନ୍ୟାୟ୍ ଅଧିକାରୀ ମହାବୀର ଜୟନ୍ତି ଦିନ ସହରର ସମସ୍ତ ଆମିଷ ବିକ୍ରି କରୁଥିବା ଦୋକାନ ବନ୍ଦ ରଖିବାପାଇଁ ଆଦେଶ ଦେଇଥା'ନ୍ତି । ଏହା ଅନ୍ୟ ଧର୍ମର ଆମିଷ ଖାଉଥିବା ଲୋକମାନଙ୍କ ପ୍ରତି ପକ୍ଷପାତ ନୁହେଁ କି ? ଏହି ଆଦେଶ ଦ୍ୱାରା ଲୋକମାନ୍ଙ୍କର ଖାଇବାଭଳି ମୌଳିକ ଅଧିକାର ଏବଂ ମାଛ, ମାଂସ ବିକ୍ରି କରୁଥିବା ଲୋକମାନଙ୍କ ପ୍ରତି ଅବିଚାର ନୁହେଁ କି ?

ସରକାରଙ୍କ ଧର୍ମ ନିରପେକ୍ଷ ନୀତି ବେଳେ ବେଳେ ଅସହାୟ୍ ଓ ସାଣ୍ଢ଼ୁ ଅବସ୍ଥାର ସମ୍ମୁଖୀନ ହୋଇଥାଏ । ଉଦାହରଣ : ହିନ୍ଦୁମାନଙ୍କର ଗଣେଶ, ସରସ୍ୱତୀ, ଦୁର୍ଗା ଆଦି ଅନେକ ଦେବୀ ଦେବତାଙ୍କ ବିସର୍ଜନ ଯାତ୍ରା ସମୟ୍‌ରେ ବାଜା ବଜେଇବା ହେଉଛି ଧାର୍ମିକ ପରମ୍ପରା । ଏହାର ବିପରୀତ ମୁସଲମାନ ମାନଙ୍କର ମସ୍‌ଜିଦ ଆଗରେ ବାଜା ବଜେଇବା, ବାଣ ଫୁଟେଇବା ନିଷେଧ । ବିସର୍ଜନ ଯାତ୍ରା ବାଟରେ ଯଦି ମସ୍‌ଜିଦ ଅଛି, ସେଇଠି ବାଜା ବାଜିବ କି ନାହିଁ ? ଏହାକୁ ନେଇ ବିବାଦ ସୃଷ୍ଟି ହୁଏ ।

ଧାର୍ମିକ ଅସହିଷ୍ଣୁତା ଯୋଗୁଁ ଦୁଇ ପକ୍ଷ ନିଜ ପରମ୍ପରାକୁ ବଜାୟ୍ ରଖିବାପାଇଁ ଅଡି ବସିବେ । ଯାତ୍ରା ଦଳର ଲୋକମାନେ ଭାବିବେ ନାହିଁ ଯେ "ଛାଡ ଏତିକି ବାଟ ବାଜା ନ ବଜେଇ ଆଗକୁ ଚାଲିଗଲେ କ'ଣ କ୍ଷତି ହେବ ?" କିମ୍ବା ଅପର ପକ୍ଷ ଭାବିବେ ନାହିଁ ଯେ "ଛାଡ ସେମାନେ ଖୁସିରେ ନାଚି ଗାଇ ବାଜା ବଜେଇ ଚାଲିଗଲେ କ'ଣ କ୍ଷତି ହେବ ?" ଏହାର ବିପରୀତ ଦୁଇ ପକ୍ଷରୁ ଧର୍ମକାଙ୍ଗାଳ ଲୋକମାନେ ମରିବା, ମାରିବାପାଇଁ ଆଗେଇ ଆସିବେ । ଏହି ପରିସ୍ଥିତିରେ ପ୍ରଶାସନର ଅବସ୍ଥା

ଶୋଚନୀୟ ହୋଇପଡେ । ପୋଲିସ କାହାକୁ ସମର୍ଥନ କରିବ ? ମୂକ ଦର୍ଶକ ହୋଇ ରହିଲେ ବି ଅସୁବିଧା । ଧାର୍ମିକ ସଂଘର୍ଷ ଯୋଗୁଁ ଧନ, ଜୀବନ ହାନୀ ହେବାର ସଂଭାବନା ବଢିଯିବ ।

ଯଦି ସରକାର ବା ପ୍ରଶାସନ ଧର୍ମଠାରୁ ସଂପୂର୍ଣ୍ଣ ଅଲଗା ରହିବ ଏବଂ ଧର୍ମ ନାମରେ ହେଉଥିବା ସାମାଜିକ ବିଶୃଙ୍ଖଳାକୁ ନିଷ୍ପକ୍ଷ ଭାବେ ଦମନ କରିବାକୁ ଚାହିଁବ, ତେବେ ହିଁ ପ୍ରତ୍ୟେକ ବ୍ୟକ୍ତିର ଆସ୍ଥା ବା ବିଶ୍ୱାସର ସୀମା ନିର୍ଦ୍ଧାରଣ ହୋଇପାରିବ । ଏପରିକି ନୀରିଶ୍ୱରବାଦୀଙ୍କ ବୈଜ୍ଞାନିକ ଚିନ୍ତନ ଓ ମାନବବାଦୀ ବିଚାରଧାରାକୁ ନିର୍ଭୟରେ ପ୍ରକାଶ କରିବାପାଇଁ ଅନୁକୂଳ ଭିତ୍ତି ଭୂମିଟିଏ ମିଳିପାରିବ । ବିଡମ୍ବନା ହେଉଛି ଯେ ସରକାରୀ ଆସନରେ ବସିଥିବା ପ୍ରାୟ ସମସ୍ତ ଅଧିକାରୀ ଓ ଅଫିସର ଗୋଟିଏ ଲେଖାଏଁ ଧର୍ମ ସଂପ୍ରଦାୟର ସମର୍ଥକ । ତେଣୁ ସେମାନଙ୍କଠାରୁ ଧର୍ମ ନିରପେକ୍ଷ ଆଶା କରିବା କେତେଦୂର ସମୀଚୀନ, ତାହା ଆମର ସୁଧି ପାଠକେ ବିଚାର କରନ୍ତୁ ।

********

# ରୁଗ୍ଣ ମାନସିକତା ଓ ତନ୍ତ୍ର-ମନ୍ତ୍ର

ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିକାଶଫଳରେ ମାନବ ଆଜି ଅନେକ ପ୍ରକାର ସୁଖ ତଥା ସୁବିଧା ଉପଭୋଗ କରିପାରୁଛି । ଭୌତିକ ଜଗତର ସୁଖ ସାଧନ ବସ୍ତୁ ଗୁଡ଼ିକ ନିଶ୍ଚିତ ଭାବେ ଶୂନ୍ୟରୁ ଗଳିପଡିନାହିଁ କିମ୍ବା ଚମତ୍କାର ଶକ୍ତି ଦ୍ୱାରା ଉଭାହୋଇ ଯାଇନାହିଁ । ଏହି ମଣିଷ ହିଁ ଗଭୀର ଅଧ୍ୟବସାୟ, ଗବେଷଣା ଓ କଠିନ ପରିଶ୍ରମ କରି ନିଜପାଇଁ ଯାନବାହାନ, ବିଜୁଳିଶକ୍ତି, ଟେଲିଭିଜନ, ରେଡିଓ, ଇଣ୍ଟରନେଟ୍ ମୋବାଇଲ ଓ ବିଭିନ୍ନ ମେଡିକାଲ ଉପକରଣ ଉଦ୍‌ଭାବନ କରିପାରିଛି । ସେହି ମଣିଷ (ବୈଜ୍ଞାନିକ) ମାନେ କେବେ ବି କୌଣସି ଧର୍ମସ୍ଥଳରେ ଦିନ ରାତି ଧ୍ୟାନ, ଯୋଗ ବା ତପସ୍ୟା କରି ଏ ଗୁଡିକ ଉଦ୍ଭାବନ କରି ନାହାଁନ୍ତି । ସେମାନେ କୌଣସି ଧର୍ମଶାସ୍ତ୍ର ପଢି ବୈଜ୍ଞାନିକ ଉପକରଣ ଗୁଡିକ ଖୋଜି ପାଇ ନାହାଁନ୍ତି । ପ୍ରକୃତିରୁ ଉପଲବ୍‌ଧ ମୌଳିକ ଉପାଦାନ ବା କଞ୍ଚାମାଲକୁ ବିଭିନ୍ନ ଉପାୟରେ ଶୋଧନ କରି ମାନବ ଉପଯୋଗୀ ବସ୍ତୁ ତିଆରି କରିଛନ୍ତି । ଏହି ପ୍ରକ୍ରିୟା ନିରନ୍ତର ଚାଲୁ ରହିଛି । ଆଗାମୀ ଦିନ ମାନଙ୍କରେ ଆହୁରି କେତେ, କ'ଣ ନୂଆ ଜିନିଷ ଆମକୁ ଦେଖିବାକୁ ଏବଂ ଉପଭୋଗ କରିବାକୁ ମିଳିବ, କେହି କଳ୍ପନା ବି କରିପାରିବେନି । ଏହା ହେଉଛି ଆମର ନିତିଦିନିଆ ଆଖି ଦେଖା, କାନ ଶୁଣା ସତ ବିଜ୍ଞାନର କଥା । ଏହାର ଅନ୍ୟ ଏକ ପାଖରେ ରହିଛି କେବେ ବି ନଦେଖା କେବେ ବି ଅଶୁଣା କଥାର ଏକ କାଳ୍ପନିକ ବିଶ୍ୱାସର ଜଗତ । ସେହି ଜଗତରେ ସମସ୍ତ କାଳ୍ପନିକ ଚରିତ୍ର ବାସ କରନ୍ତି । ଈଶ୍ୱର, ୩୩ କୋଟି ହିନ୍ଦୁ ଦେବୀ ଦେବତା, ସ୍ୱର୍ଗରେ ଅପସରୀଗଣ, ନର୍କରେ ଯମରାଜା ଓ ତାଙ୍କର ଯମଦୂତଗଣ, ଶୂନ୍ୟରେ ଭୂତ, ପ୍ରେତ, ଡାହାଣୀ, ଅତୃପ୍ତ ଆତ୍ମା ସବୁ ବିଚରଣ କରୁଛନ୍ତି । ଉପରୋକ୍ତ ସମସ୍ତ କାଳ୍ପନିକ ଚରିତ୍ରମାନଙ୍କୁ ମଣିଷମାନେ ଭୀଷଣ ଭୟ କରନ୍ତି । ସେମାନେ ଅସନ୍ତୁଷ୍ଟ ନ ହେବାପାଇଁ ମଣିଷ ଆଦିମ କାଳରୁ ହାତ ଯୋଡି, କାନୁପାତି, ବେଳେବେଳେ ମୁହଁମାଡି ଶୋଇପଡି ପ୍ରଣାମ କରନ୍ତି, ପ୍ରାର୍ଥନା କରନ୍ତି, ଆଶୀର୍ବାଦ ଭିକ୍ଷା କରନ୍ତି ।

ଏହା ସବୁ କଲାପରେ ବି ଆଶାନୁରୂପ ଫଳ ମିଳୁ ନଥିବାରୁ କେତେକ ବୁଦ୍ଧିଆ (ପୁରୋହିତବର୍ଗ) ଲୋକ ଆଉ କିଛି ମନଗଢା କାହାଣୀ ସୃଷ୍ଟି କଲେ ।

ନିଜେ ନିଜେ ପ୍ରାର୍ଥନା କଲେ ଦେବୀ ଦେବତା ସନ୍ତୁଷ୍ଟ ହୋଇପାରୁନାହାଁନ୍ତି, ତେଣୁ ଶାସ୍ତ୍ର ପଢିଥିବା ପଣ୍ଡିତ ମାନଙ୍କ ଦ୍ୱାରା ସେହି କାମ କରାଇଲେ ଭକ୍ତ ମାନଙ୍କର ମନୋବାଞ୍ଛା ନିଶ୍ଚୟ ହିଁ ପୂର୍ଣ୍ଣ ହେବା ଦାବି କରାଗଲା । କଥାଟି ଖୁବ୍ ଶୀଘ୍ର ସମସ୍ତଙ୍କ ମନକୁ ପାଇଲା । ସତକଥା ବିନା ମଧ୍ୟସ୍ଥିରେ (ଦଲାଲ) କୌଣସି କାମ ସହଜରେ ହୋଇ ପାରିବନି । ତେଣୁ ଈଶ୍ୱରଙ୍କୁ ବି ଭକ୍ତର ଦୁଃଖ ଜଣେଇବା ପାଇଁ ପୁରୋହିତ ବର୍ଗର ମଧ୍ୟସ୍ଥିମାନେ କାମ କଲେ । ସେମାନେ ଅବଶ୍ୟ ଏହି କାମ ମାଗଣାରେ ନୁହେଁ, ଦାନ ଓ ଦକ୍ଷିଣା ନାମରେ ବେଶ୍ ଦୁଇପଇସା ରୋଜଗାର କରି ପାରିଲେ ।

ବିଭିନ୍ନ ଧର୍ମଶାସ୍ତ୍ର ମଧ୍ୟରୁ ତନ୍ତ୍ର ମନ୍ତ୍ର ଲେଖାଥିବା ଗ୍ରନ୍ଥ ଗୁଡିକର ଡିମାଣ୍ଡ ବେଶୀ । କାରଣ ମଣିଷର ସମସ୍ୟାକୁ ତତ୍କାଳୀନ ଭିତ୍ତିରେ ସମାଧାନର ସୂତ୍ର ଏହି ସବୁ ଗ୍ରନ୍ଥରେ ଅଛି ବୋଲି ଦାବି କରାଯାଏ । କିଏ ବା ନ ଚାହେଁ ସମସ୍ୟାର ଆଶୁ ସମାଧାନ ? ତାନ୍ତ୍ରିକ ମାନଙ୍କ ଦାବି ଅନୁସାରେ - (କ) ତନ୍ତ୍ର ମନ୍ତ୍ରରେ ଅଦ୍ଭୁତ ଶକ୍ତି ରହିଛି । (ଖ) ତନ୍ତ୍ର ମନ୍ତ୍ରର ଅଲୌକିକ ସିଦ୍ଧି ଦ୍ୱାରା ଅସମ୍ଭବ ଲାଗୁଥିବା କାମ ସହଜରେ ସିଦ୍ଧ ହୋଇଯିବ । (ଗ) ଶୂନ୍ୟରେ ବିଚରଣ କରୁଥିବା ଅତୃପ୍ତ ଆତ୍ମାମାନଙ୍କୁ ତନ୍ତ୍ର ମନ୍ତ୍ର ସାହାଯ୍ୟରେ ନିୟନ୍ତ୍ରଣ କରିହେବ । ସେମାନଙ୍କୁ ବଶୀଭୂତ କରି ମଣିଷ ମାନଙ୍କ ଫାଇଦାପାଇଁ ବ୍ୟବହାର କରିହେବ । (ଘ) ମନ୍ତ୍ର ଦ୍ୱାରା ଭୂମିଗତ ଗୁପ୍ତ ସମ୍ପତ୍ତିର ସନ୍ଧାନ କରିବା ସମ୍ଭବ । (ଚ) ଲଟେରୀ ଟିକଟରେ ଜିତିବା ନମ୍ବରକୁ ଜାଣିବା ସମ୍ଭବ । (ଛ) ହଜାର ହଜାର କିଲୋମିଟର ଦୂରରେ ରହୁଥିବା ପ୍ରିୟଜନଙ୍କ ହାଲଚାଲ ସମ୍ପର୍କରେ ଜାଣିହେବ । ଏହିଭଳି ଏକ ଉଦାହରଣ ମୁଁ ପାଇଛି ଭୁବନେଶ୍ୱରର ଜଣେ ବରିଷ୍ଠ ଓକିଲଙ୍କ ଅନୁଭବ ଶୁଣି । ସେ କହିଲେ "ଆମେରିକାରେ ରହୁଥିବା ମୋ ଝିଅ ବର୍ତ୍ତମାନ କ'ଣ କରୁଛି ଜାଣିବା ପାଇଁ ମୋର ଜଣେ ପରିଚିତ ସିଦ୍ଧ ପୁରୁଷଙ୍କୁ ପଚାରିବାରୁ ସେ ଯାହା ଯାହା କହିଲେ, ପରେ ମୁଁ ଫୋନ୍ କରି ଜାଣିଲି, ମୋ ଝିଅ ସବୁ ସତ ବୋଲି କହିଲା ।" ଏହିଭଳି ଅନୁଭବ କରିଥିବା ଜଣେ ଶିକ୍ଷିତ ଓ ଭଦ୍ରବ୍ୟକ୍ତିଙ୍କ କଥାକୁ କିଏ ବା ଅସ୍ୱୀକାର କରିପାରିବ ? ଏଭଳି ଗାଲୁଆଙ୍କ ଅଭାବ ନାହିଁ ।

ଏଇଠି ପ୍ରଶ୍ନ ଉଠୁଛି - ଯଦି ବାସ୍ତବରେ ସିଦ୍ଧ ପୁରୁଷଙ୍କ ଦାବି କରୁଥିବା ଜ୍ଞାନ ସତ ହୋଇଥାଏ, ତେବେ ଆମ ଦେଶରେ ବାସ କରୁଥିବା ଅସଂଖ୍ୟ ଦୁଃଖୀ ଲୋକମାନଙ୍କର ଦୁଃଖ, ଦୁର୍ଦ୍ଦଶା ଆଦି ଦୂର ହୋଇପାରୁନି କାହିଁକି ? କୌଣସି ତାନ୍ତ୍ରିକ ତାଙ୍କର ଭୂତମାନଙ୍କୁ ପଠେଇ ଆମ ଦେଶର ଶତ୍ରୁ ମାନଙ୍କୁ ପରାସ୍ତ କିମ୍ବା ନିପାତ କରି ଦେଉନାହାଁନ୍ତି କାହିଁକି ? ଦେଶର କୋଟି କୋଟି ରୋଗୀଙ୍କୁ ସୁସ୍ଥ କରି ଦେଉନାହାଁନ୍ତି କାହିଁକି ? ଅନ୍ୟମାନଙ୍କ କଥା ଛାଡନ୍ତୁ, ସେମାନଙ୍କ ନିଜ ପରିବାର ଲୋକଙ୍କ ବିଭିନ୍ନ ରୋଗର ଚିକିତ୍ସାପାଇଁ ଡାକ୍ତରଙ୍କ ପାଖକୁ ଦୌଡୁଛନ୍ତି କାହିଁକି ? ତାଙ୍କ ଘରେ ଚୋରି ଡକୈତି ହେଲେ ପୋଲିସ ପାଖକୁ ଦୌଡୁଛନ୍ତି କାହିଁକି ?

ଅସଲ କଥା ହେଉଛି ଯେ ତନ୍ତ୍ର ମନ୍ତ୍ରରେ କୌଣସି ଶକ୍ତି ନାହିଁ । କେତେକ ଧୂର୍ତ୍ତ ଓ ଠକ ପ୍ରକୃତିର ଲୋକ ଏହି ବିଦ୍ୟା ସାହାଯ୍ୟରେ ଧର୍ମଭୀରୁ ଲୋକମାନଙ୍କ ବ୍ରେନ୍‌ୱାସ କରି ଧନ ରୋଜଗାରର ଏକ ସରଳ ରାସ୍ତା ବାଛି ନେଇଛନ୍ତି । ସେମାନେ ହାତ ସଫେଇ କଳା କିମ୍ବା ବିଜ୍ଞାନ କୌଶଳକୁ ବ୍ୟବହାର କରି ଲୋକମାନଙ୍କୁ ପ୍ରଭାବିତ କରି ପାରୁଛନ୍ତି । ଉଦାହରଣ :- ଶୂନ୍ୟରେ ହାତ ହଲେଇ ବିଭୂତି, ମୁଦି, ତାବିଜ ଆଦି ପ୍ରକଟ କରିବା ଏକ ସାଧାରଣ ହାତ ସଫେଇ **sleight of hand** କଳା । ଯାଦୁଗରମାନେ ମନୋରଞ୍ଜନ ପାଇଁ ଏଭଳି ଖେଳ ଦେଖେଇ ଥା'ନ୍ତି । ସେହିଭଳି ପୋଟାଶିୟମ ପରମାଂଗାନେଟ ଉପରେ ଗ୍ଲିସରୀନ୍ ଦ୍ରବ ଢାଳିଲେ ନିଆଁ ଜଳି ଉଠିବା ଏକ ରାସାୟନିକ ପ୍ରକ୍ରିୟା । ଏ ସବୁ କୌଣସି ଭୂତ, ପ୍ରେତ କିମ୍ବା ଆତ୍ମାର କାମ ନୁହେଁ ।

ଧାର୍ମିକ ଲୋକର ଦୁର୍ବଳତା ହେଉଛି, ସେ ପୂର୍ବାଗ୍ରହ ରହିତ ଏବଂ ନିଷ୍ପକ୍ଷ ଭାବେ ପ୍ରକୃତିର ଗୁଣ ଓ ଧର୍ମକୁ ଅଧ୍ୟୟନ କରିବାକୁ ଚାହୁଁନି । କାରଣ ଏହା ଦ୍ୱାରା ପିଲାଟି ଦିନରୁ ଗଢି ଉଠିଥିବା ଧର୍ମିୟ ଆସ୍ଥାର କାଳ୍ପନିକ ମହଲଟି ଭୁଷୁଡି ପଡିବାର ଭୟ ରହିଥାଏ । ସେ ବୁଝିପାରେ ନାହିଁ ଯେ ପ୍ରକୃତିର ଗୁଣ, ଧର୍ମ, କାରଣ ଓ କାର୍ଯ୍ୟ ଶୈଳୀରେ ଚମତ୍କାରର କୌଣସି ସ୍ଥାନ ନାହିଁ ।

ଭୂତ, ପ୍ରେତ, ଡାହାଣୀ ଓ ବ୍ରହ୍ମରାକ୍ଷସର କୌଣସି ଅସ୍ତିତ୍ୱ ନାହିଁ। ଏହା ଆଜିର ବିଜ୍ଞାନ ପ୍ରମାଣ କରିସାରିଲାଣି। ତଥାପି ପରମ୍ପରା କ୍ରମେ ଶୁଣି ଶୁଣି ଅଜ୍ଞାନତା ବଶତଃ ଅନେକ ମଣିଷ ଭୂତ, ପ୍ରେତ ଆଦି ଭ୍ରମାତ୍ମକ ଜାଲରେ ଛନ୍ଦି ହୋଇ ରହିଛନ୍ତି। ସେହି ଭଳି ଗ୍ରହ, ନକ୍ଷତ୍ର, ରାଶି, ଲଗ୍ନ, ଦିଶାଶୂଳ, ଶୁଭ, ଅଶୁଭ ମୁହୂର୍ତ୍ତ, ତନ୍ତ୍ର-ମନ୍ତ୍ର ଆଦି କାଳ୍ପନିକ ଜଗତରେ ନିଜର ଶାନ୍ତି ଖୋଜି ବୁଲୁଛନ୍ତି।

ପ୍ରଶ୍ନ ଉଠୁଛି - ପୃଥିବୀରୁ କୋଟିକୋଟି କିଲୋମିଟର ଦୂରରେ ଥିବା ଗ୍ରହ ଓ ନକ୍ଷତ୍ର ଗୁଡିକ ପୃଥିବୀର କେବଳ ମଣିଷ ଉପରେ ହିଁ କାହିଁକି ଶୁଭ ବା ଅଶୁଭ ପ୍ରଭାବ ପକାଉଛନ୍ତି ? ବିଡମ୍ବନା ହେଉଛି ଯେ କେବଳ ସାଧାରଣ ଲୋକ ନୁହେଁ, ବଡ ବଡ ଜ୍ଞାନୀ ବୁଦ୍ଧିଜୀବୀ, ଡାକ୍ତର, ଇଂଜିନିୟର, ଏପରିକି କେତେକ ଭୌତିକ ବିଜ୍ଞାନର ପ୍ରଫେସରମାନେ ବି ଗ୍ରହଦୋଷକୁ ମାନୁଛନ୍ତି। ସେହି ମାନଙ୍କୁ ଦେଖି, ଶୁଣି ସାଧାରଣ ଜନତା ଆହୁରି ବେଶୀ ବିଶ୍ୱାସ କରୁଛନ୍ତି।

ପୁରୁଣା ଯୁଗର ଅନ୍ଧବିଶ୍ୱାସ ଆଜିର ବୈଜ୍ଞାନିକ ପ୍ରଯୁକ୍ତି ଯୁଗରେ ବି ଜନମାନସରେ ଗଭୀର ଆସ୍ଥାନ ଜମେଇ ବସିଛି। ଗୁଣିଆ ଓ ତାନ୍ତ୍ରିକମାନଙ୍କ ଯୋଗୁଁ ପ୍ରତିଦିନ ନଷ୍ଟ ହେଉଥିବା ଧନ ଓ ଜୀବନର ଖବର ଦେଖିବାକୁ ଓ ଶୁଣିବାକୁ ମିଳୁଛି। ଯଦି ସେମାନଙ୍କ ବିଦ୍ୟାରେ ଅଦ୍ଭୁତ ଶକ୍ତି ରହିଥା'ନ୍ତା, ଆଜି ଶହ ଶହ ଗୁଣିଆ, ତାନ୍ତ୍ରୀକ, ବାବା, ସିଦ୍ଧପୁରୁଷ ଜେଲରେ ସଡୁଛନ୍ତି କାହିଁକି ? କେତେକ ଲୋକ ଯୁକ୍ତିକରି କୁହନ୍ତି ତନ୍ତ୍ର, ମନ୍ତ୍ର ବିଦ୍ୟାର ଅଧୁରା ଜ୍ଞାନ ପାଇ ଯେଉଁମାନେ କାମ କରନ୍ତି, ସେହିମାନେ ଏଭଳି ଦୁର୍ଦ୍ଦଶା ଭୋଗ କରନ୍ତି। ଯେଉଁମାନଙ୍କର ପ୍ରକୃତ ତାନ୍ତ୍ରୀକ ଜ୍ଞାନ ଅଛି, ସେମାନେ ସଫଳ ଭାବେ ଜନତାଙ୍କ ସେବା କରୁଛନ୍ତି।

ସେଇମାନଙ୍କୁ ଆମେ ପ୍ରଶ୍ନ କରୁଛୁ - ସିଦ୍ଧ ତାନ୍ତ୍ରୀକ ମାନେ ଆଜି ପର୍ଯ୍ୟନ୍ତ "ଭାରତୀୟ ହେତୁବାଦୀ ସଙ୍ଗଠନ" ଦ୍ୱାରା ଦିଆଯାଇଥିବା ଆହ୍ୱାନ ସ୍ୱୀକାର କରି, ଏକ କୋଟି ଟଙ୍କାର ଉପହାର ରାଶି ଗ୍ରହଣ କରିବାପାଇଁ ଆଗେଇ ଆସୁନାହାଁନ୍ତି କାହିଁକି ? କଥାରେ ଅଛି, "ନେଇ, ଆଣି ଥୋଇ ଜାଣିଲେ ଚୋରି କାମଟି ଭଲ।"

ଏହି ନୀତିରେ ସତର୍କତା ପୂର୍ବକ ଯେଉଁମାନେ ଲୋକମାନଙ୍କୁ ଠକି ଚାଲିଛନ୍ତି, ସେମାନେ କାନୁନ୍‌ର ଜାଲରେ ପଡୁନାହାଁନ୍ତି । ଏହାର ଅର୍ଥ ନୁହେଁ ଯେ, ସେମାନେ ଯାହା କରୁଛନ୍ତି ସବୁ ସତ୍ୟ ।

ମଜା କଥା ହେଉଛି - ଆଜି ଅନେକ ଶିକ୍ଷିତ ଜ୍ୟୋତିଷ, ତାନ୍ତ୍ରୀକ ଓ ବାବାମାନେ ତନ୍ତ୍ର ମନ୍ତ୍ରକୁ ବିଜ୍ଞାନ ସମ୍ମତ ବିଦ୍ୟା ହିସାବରେ ପ୍ରମାଣିତ କରିବାପାଇଁ ବିଭିନ୍ନ ତର୍କ ଓ ଉପାୟ୍ ଖୋଜୁଛନ୍ତି । ପ୍ରଶ୍ନ ଉଠୁଛି - ତୁମର ତନ୍ତ୍ର-ମନ୍ତ୍ର ଯଦି ସମ୍ପୂର୍ଣ୍ଣ ସତ୍ୟ ଓ ଅଦ୍ଭୁତ ଶକ୍ତି ସମ୍ପନ୍ନ ବିଦ୍ୟା, ତେବେ ତାକୁ ବିଜ୍ଞାନ ସହିତ ତୁଳନା କରି ଠିକ୍ ବୋଲି ପ୍ରମାଣିତ କରିବା କ'ଣ ଆବଶ୍ୟକ ? ଏହାର ସିଧା ଅର୍ଥ ହେଉଛି ଯେ ତୁମେ ବିଜ୍ଞାନ ହିଁ ସତ୍ୟର ଏକ କଷଟି ପଥର ବୋଲି ବୁଝିପାରିଛ ଏବଂ ସନ୍ଦେହ ସୃଷ୍ଟି କରୁଥିବା ତୁମର ବିଦ୍ୟାକୁ ବିଜ୍ଞାନ ସମ୍ମତ କରି ବଜାରରେ ବିକ୍ରି କରିବାକୁ ଚାହୁଁଛ ।

ଅନ୍ଧବିଶ୍ୱାସର ପ୍ରଚାର ଓ ପ୍ରସାରରେ ଆଜି ଗଣମାଧ୍ୟମ ଏକ ମୂଖ୍ୟ ଭୂମିକା ଗ୍ରହଣ କରିଛି । ସାହିତ୍ୟ ପତ୍ରିକା କିମ୍ବା ଖବର କାଗଜ ହେଉ ସମ୍ପାଦକମାନେ ବଡେଇ, ଚଡେଇ ଭୂତ, ପ୍ରେତ ବିଶେଷାଙ୍କ, ତନ୍ତ୍ର-ମନ୍ତ୍ର ବିଶେଷାଙ୍କ ପ୍ରକାଶ କରି ଯଥେଷ୍ଟ ଲାଭବାନ ହେଉଛନ୍ତି । ଟିଭି ଚ୍ୟାନେଲ ବି ଦର୍ଶକ ମାନଙ୍କୁ ପ୍ରଭାବିତ କରିବାପାଇଁ, ଇଲେକଟ୍ରୋନିସ୍ ମିଡିଆ ସାହାଯ୍ୟରେ ଅନେକ ବିଚିତ୍ର ଓ ଅଦ୍ଭୂତ ଦୃଶ୍ୟ ପ୍ରଦର୍ଶନ କରିଥା'ନ୍ତି । ପତ୍ରିକାର ସମ୍ପାଦକ ଏବଂ ଟିଭି ଚ୍ୟାନେଲ୍‌ର ମାଲିକମାନେ, ଧନ ଲୋଭରେ ଜନତାଙ୍କ କେତେ ବଡ କ୍ଷତି କରୁଛନ୍ତି, ତାହା ସେମାନେ ବୁଝିବାକୁ ଚାହୁଁ ନାହାଁନ୍ତି । ଜନସାଧାରଣଙ୍କ ରୁଗଣ ମାନସିକତାକୁ ସୁସ୍ଥ କରିବାପାଇଁ ହେତୁବାଦୀ ବିଚାର ଓ ସାହିତ୍ୟର ଆଜି ଯଥେଷ୍ଟ ଆବଶ୍ୟକତା ରହିଛି । ସୁଖର କଥା ଯେ ଅନେକ ମୁକ୍ତଚିନ୍ତକ, ସାହାସୀ ସମ୍ପାଦକ ହେତୁବାଦୀ ବିଚାରଧାରାକୁ ପ୍ରକାଶ କରୁଛନ୍ତି । ସେମାନଙ୍କୁ ଆମେ ଅଭିନନ୍ଦନ କରିବା ସହିତ ଧନ୍ୟବାଦ ଜଣାଉଛୁ ।

*******

# ଆମେ କେଉଁ ମାର୍ଗରେ ଯିବା ?

ଏହି ସାଧାରଣ ପ୍ରଶ୍ନଟି ଯେଉଁ ଉଦ୍ଦେଶ୍ୟରେ ପଚରା ଯାଇଥାଏ, ସେହି ଉଦ୍ଦେଶ୍ୟର ପ୍ରାପ୍ତି ପାଇଁ ଉତ୍ତର କିନ୍ତୁ ଭିନ୍ନ ଭିନ୍ନ ହୋଇପାରେ । ଏଇଠି ଆମର ଉଦ୍ଦେଶ୍ୟ ହେଉଛି - ଭୌତିକ ମାର୍ଗରେ ଚାଲିବା ନା ଅଧିଭୌତିକ ମାର୍ଗରେ ଚାଲିବା ? ଅର୍ଥାତ ପ୍ରାକୃତିକ ସାଂସାରିକ ମାର୍ଗ ନା ପରା-ପ୍ରାକୃତିକ ମାର୍ଗ ? ଏହାର ଉତ୍ତର ବି ଦୁଇଟିରୁ ଏକ ନା ଏକା ସାଙ୍ଗରେ ଉଭୟ ମାର୍ଗରେ ଚାଲିବା ଉଚିତ ହେବ ? ଏକ ବିଚାରଣୀୟ ବିଷୟ । ଆସନ୍ତୁ ବିଚାର କରି ଦେଖିବା କେଉଁ ମାର୍ଗରେ ଚାଲିଲେ ଆମର ବେଶୀ ଲାଭ ହେବ ?

ପ୍ରାକୃତିକ ବା ସାଂସାରିକ ମାର୍ଗ କଅଣ ?

ଆମେ ଯେଉଁ ପୃଥିବୀରେ ବାସ କରୁଛୁ, ସେହି ପୃଥିବୀ ପୃଷ୍ଠରୁ ଆମେ ଜୀବନ ଧାରଣପାଇଁ ସମସ୍ତ ମୌଳିକ ଉପାଦାନ ପ୍ରାପ୍ତ କରିପାରୁଛୁ । ଜଳ, ବାୟୁ, ଖାଦ୍ୟ ପଦାର୍ଥ, ବସ୍ତ୍ର, ବାସସ୍ଥାନ ଆଦି ସିଧାସଳଖ ଭାବେ ପ୍ରକୃତି ଠାରୁ ମଣିଷପାଉଛି । ସମୟାନୁକ୍ରମେ ମଣିଷର ବିକଶିତ ମସ୍ତିଷ୍କ ପ୍ରକୃତିକୁ ଅନ୍ୱେଷଣ କରି ବୁଝିପାରିଛି ଯେ, ଏକ ସୁସ୍ଥ ଶରୀରପାଇଁ ସ୍ୱଚ୍ଛ ଜଳ, ବିଶୁଦ୍ଧ ବାୟୁ ଓ ସୁଷମ ଖାଦ୍ୟର ଆବଶ୍ୟକ ପଡୁଛି । ସେଥିପାଇଁ ସେ ଅନେକ ଗବେଷଣା କରି ନିଜପାଇଁ ଉପଯୁକ୍ତ ଜଳ, ବାୟୁ ଓ ଖାଦ୍ୟ ଉତ୍ପାଦନ କରି ପାରୁଛି । ଜୀବନଧାରଣ ପାଇଁ ଆହୁରି ଅନେକ ଭୌତିକ ସାଧନର ଆବଶ୍ୟକତା ଅନୁଭବ କରି ବାସସ୍ଥାନ, ଯାତାୟାତପାଇଁ ଯାନବାହନ, ରୋଗ ବ୍ୟାଧିରୁ ମୁକ୍ତ ହେବାପାଇଁ ଚିକିତ୍ସା ବିଜ୍ଞାନ ଇତ୍ୟାଦି ଉଦ୍ଭାବନ କରିଛି । ଏପରିକି ପ୍ରାକୃତିକ ବିପର୍ଯ୍ୟୟ ଗୁଡିକରୁ ସୁରକ୍ଷା ପାଇବାର ବିଭିନ୍ନ ଉପାୟ ଖୋଜିବାକୁ ବୈଜ୍ଞାନିକମାନେ ଅକ୍ଳାନ୍ତ ପରିଶ୍ରମ କରୁଛନ୍ତି । ଆଜିର ଜୀବନ ସ୍ତରକୁ ଦେଖି କେହି ବି ଅସ୍ୱୀକାର କରିପାରିବେନି ଯେ ଗତ କିଛି ଶହ ବର୍ଷ ତଳର ଜୀବନ ସ୍ତର ଆଜି ଭଳି ଉନ୍ନତ ଏବଂ ସୁଖକର ନଥିଲା । ଆଜିର ବୁଦ୍ଧିବାଦୀ ଓ ବିଦ୍ୱାନ କୁହନ୍ତି ସାଂସାରିକ ମାର୍ଗ ହିଁ ଉଚିତ୍ ମାର୍ଗ ।

### ପରା-ପ୍ରାକୃତିକ ମାର୍ଗ କଅଣ ?

ପୃଥିବୀରେ ମଣିଷ ବ୍ୟତୀତ ଆହୁରି କୋଟି କୋଟି ଜୀବଜନ୍ତୁ ସୃଷ୍ଟି ହୋଇଛନ୍ତି । ମଣିଷର କେତେକ ବିଶେଷ ଗୁଣ ଥିବାରୁ ସେ ହିଁ ଏହି ସୃଷ୍ଟିର ଶେଷ୍ଠ ବା ପ୍ରଧାନ ପ୍ରାଣୀ ରୂପେ ବିବେଚନା, କରୁଛି । ମଣିଷର ମସ୍ତିଷ୍କରେ ଚିନ୍ତନ ଶକ୍ତି ଅଛି, ସେହି ଚିନ୍ତନ ବା ବିଚାରକୁ ଭାଷା ମାଧ୍ୟମରେ ପ୍ରକାଶ କରିପାରୁଛି । ଏହି ଦୁଇଟି ବିଶେଷ ଗୁଣ ବଳରେ ମଣିଷ ପ୍ରକୃତିକୁ ଆଦିମ କାଳରୁ ପରୀକ୍ଷା ନୀରିକ୍ଷା କରି ସମସ୍ତ ରହସ୍ୟ ବୁଝିବାକୁ ଚେଷ୍ଟା କରୁଛି । ଆଦିମ କାଳରେ ପ୍ରକୃତିର ରହସ୍ୟ ବୁଝିବାରେ ଅକ୍ଷମ ତଥା ସୀମିତ ଜ୍ଞାନ ଯୋଗୁଁ ଦୈବୀ ଶକ୍ତିର କଳ୍ପନା ହୋଇଛି । ଏହି ସୃଷ୍ଟି କୌଣସି ଇଶ୍ୱରଙ୍କ ଦ୍ୱାରା ସମ୍ଭବ ହୋଇଛି ବୋଲି ଏକ ଦୃଢ ମତବାଦକୁ ସମସ୍ତେ ସମର୍ଥନ କଲେ । ଏହି ବ୍ରହ୍ମାଣ୍ଡକୁ ସୃଷ୍ଟି କରିଥିବା ତଥାକଥିତ ଇଶ୍ୱରଙ୍କ ପ୍ରତି ଗଭୀର ଆସ୍ଥା ଓ ବିଶ୍ୱାସ ବୃଦ୍ଧି ପାଇଲା । ଧୀରେ ଧୀରେ ଆହୁରି ଅନେକ କାଳ୍ପନିକ ମତବାଦ ସୃଷ୍ଟି ହେଲା । ପୃଥିବୀ ଠାରୁ ଅଲଗା ଶୂନ୍ୟରେ କେଉଁଠି ଏକ ଅକଣା, ଅଣଦେଖା ଦୁନିଆ ରହିଥିବା କୁହାଗଲା । ସେଇଠି ଦେବତାମାନେ ବାସ କରୁଛନ୍ତି । ସେଇଠି ସ୍ୱର୍ଗ ବି ଅଛି, ନର୍କ ବି ଅଛି । ମଣିଷ ମଲା ପରେ ସେଇଠି ଯାଇ ସ୍ୱକର୍ମ ଅନୁସାରେ ସ୍ୱର୍ଗ କିମ୍ବା ନର୍କରେ ବାସ କରିଥାଏ ।

ଉପରୋକ୍ତ ଉଦ୍ଭଟ କଳ୍ପନା ସହିତ ଯୋଡି ହୋଇଗଲା ଆଉ ଏକ ବିଶ୍ୱାସ । ସାଂସାରିକ ଜୀବନରେ ଅନେକ ଜଞ୍ଜାଳ, ଅନେକ ସମସ୍ୟାରୁ ମୁକ୍ତି ପାଇବା ପାଇଁ ଶୂନ୍ୟରେ ବାସ କରୁଥିବା ସର୍ବଶକ୍ତିମାନ ଇଶ୍ୱରଙ୍କୁ ପ୍ରାର୍ଥନା ଦ୍ୱାରା ସନ୍ତୁଷ୍ଟ କରିପାରିଲେ ଜୀବନ ଧାରଣ ସହଜ ହୋଇଯିବାର ବିଶ୍ୱାସ ହେଲା । ସେହି ବିଶ୍ୱାସ ଆଜି ବି ଜନମାନସକୁ ଭ୍ରମିତ କରି ରଖିଛି । ଧର୍ମଗୁରୁମାନେ କହିଲେ ଗୃହସ୍ଥମାନଙ୍କୁ ସାଂସାରିକ କର୍ମ ସହିତ ଆଧ୍ୟାତ୍ମିକ ମାର୍ଗରେ ବି ଚାଲିବାକୁ ହେବ । ଆଧ୍ୟାତ୍ମିକ ମାର୍ଗରେ ଧର୍ମ ଶାସ୍ତ୍ର ଅଧ୍ୟୟନ, ଚିନ୍ତନ, ଧର୍ମୀୟ କର୍ମକାଣ୍ଡ ସହିତ ସମସ୍ତ ଭୌତିକ ସୁଖଭୋଗକୁ ମାୟା ଓ ମିଥ୍ୟା ଭାବି ତ୍ୟାଗ କରି ଅଧିଭୌତିକ ଜଗତର ପ୍ରକୃତ ସୁଖ ଭୋଗ କରିବାପାଇଁ ନିଷ୍କାମ ମନରେ ସାଧନା କରିବା ଉଚିତ୍ । ଗୀତାରେ ବି ସେହି ଭଳି

କଥା କୁହାଯାଇଛି - ଫଳରେ ଆଶା ନରଖି କେବଳ କର୍ମ କରିଯାଅ । ଏଇଠି ମନରେ ପ୍ରଶ୍ନ ଉଠୁଛି କାମନା ବିହୀନ ସାଧନାର ଅର୍ଥ କଅଣ ଏବଂ ଫଳର ଆଶା ନରଖି କିଏ କିପରି କର୍ମ ଆରମ୍ଭ କରିବ ? ଆଉ ଏକ ପ୍ରଶ୍ନ ଉଠୁଛି ପୃଥିବୀରେ ଅନ୍ୟାନ୍ୟ ଜୀବଜନ୍ତୁ ଭିତରୁ କେବଳ ମଣିଷ କାହିଁକି ଭାବୁଛି ଯେ ପୃଥିବୀ ବାହାରେ ଥିବା ଦୁନିଆଁ ହିଁ ଭଲ ? ଏଇଠି ଜନ୍ମ ହୋଇ କିଛି ବର୍ଷ ଜୀବନ ଧାରଣ କରି ସମସ୍ତ ପ୍ରାଣୀ ଏଇଠି ହିଁ ମୃତ୍ୟୁବରଣ କରୁଛନ୍ତି । ଏହା ଏକ ପ୍ରାକୃତିକ ସତ୍ୟ । ମଣିଷ କାହିଁକି ଏକ ଦ୍ୱନ୍ଦ୍ୱରେ ଘାଣ୍ଟି ହେଉଛି ଯେ ମୃତ୍ୟୁ ପରେ ବି ସ୍ୱର୍ଗୀୟ ସୁଖପ୍ରାପ୍ତ ହେବ ? ପୂଣ୍ୟ ଅର୍ଜନପାଇଁ ଗତ ୨୦୧୩ମସିହାରେ କେଦାରନାଥ ଯାଇଥିବା ହଜାରହଜାର ଅନ୍ଧଭକ୍ତ ପ୍ରାଣ ହରାଇଲେ । ଏତେବଡ ପ୍ରାକୃତିକ ବିପର୍ଯ୍ୟୟରୁ ବି ଜନତା କିଛି ଶିଖି ପାରିଲେ ନାହିଁ । ଏହି ବର୍ଷ ବି ହଜାର ହଜାର ତୀର୍ଥଯାତ୍ରୀ ସେହି ଦୁର୍ଗମ ରାସ୍ତାରେ କେଦାରନାଥ ଯାତ୍ରାରେ ଯାଇ ଭୀଷଣ ବର୍ଷା ଯୋଗୁଁ ରାସ୍ତାରେ ଫସି ରହିଥିବା ଖବର ଆଜି ୧୯,୭,୨୦୧୪ ଟିଭିରେ ପ୍ରସାରିତ ହୋଇଛି । ସେମାନଙ୍କୁ ଉଦ୍ଧାର କରିବା ଦାୟିତ୍ୱ ବର୍ତ୍ତମାନ ସରକାରଙ୍କର । କେଦାରନାଥଙ୍କ ଦାୟିତ୍ୱ କାହିଁକି ନୁହେଁ ? ଏହି ପ୍ରଶ୍ନ ଯିଏ ପଚାରିବ ସେ ହେଉଛି ନାସ୍ତିକ ।

ଆମର ପୂର୍ବପୁରୁଷମାନେ ନିଜର ସୀମିତ ଜ୍ଞାନ ଯୋଗୁଁ ଯାହା ଉଚିତ୍ ବୋଲି ଭାବୁଥିଲେ, ତାହା କରୁଥିଲେ । ସେମାନଙ୍କ ଉଦ୍ଦେଶ୍ୟ ବି ଥିଲା ମଣିଷ ସୁଖ ଓ ଶାନ୍ତିରେ ଜୀବନଯାପନ କରୁ । ରୋଗ ବ୍ୟାଧୀରୁ ମୁକ୍ତ ରହୁ । ସାମାଜିକ ଶୃଙ୍ଖଳା ବଜାଏ ରହୁ । ମଣିଷ ଭିତରେ ମାନବୀୟ ଗୁଣ, ସ୍ନେହ, ପ୍ରେମ, ଦୟା, କ୍ଷମା ଓ ତ୍ୟାଗ ବିକଶିତ ହେଉ । ସେମାନଙ୍କ ଉଦ୍ଦେଶ୍ୟ ମହତ ଥିଲେ ବି ପ୍ରକୃତିର ରହସ୍ୟକୁ ଠିକ୍ ଭାବେ ବୁଝିପାରି ନଥିବାରୁ ପ୍ରତ୍ୟେକ କଠିନ ସମୟରେ ହାତଯୋଡି ଶୂନ୍ୟ ଆଡେ ଚାହିଁ ସାହାଯ୍ୟପାଇଁ ଆଶା ବାନ୍ଧି ରଖୁଥିଲେ । ଈଶ୍ୱରଙ୍କୁ ପୂଜା ଓ ପ୍ରାର୍ଥନା ଦ୍ୱାରା ସନ୍ତୁଷ୍ଟ କରି ପାରିଲେ ସମସ୍ୟାର ସହଜ ସମାଧାନ ହୋଇପାରିବ ବୋଲି ଦୃଢ ବିଶ୍ୱାସ କରୁଥିଲେ ।

ଆମେ ଇତିହାସରୁ ଜାଣି ପାରିବା ଯେ ଯେଉଁ ଅଳ୍ପ ସଂଖ୍ୟକ ବୁଦ୍ଧିବାଦୀ, ମୁକ୍ତ ଚିନ୍ତକ ବୈଜ୍ଞାନିକ ପ୍ରକୃତିକୁ ନୀରିକ୍ଷଣ, ଅନ୍ୱେଷଣ ଓ ଗବେଷଣା କରି ଦୁନିଆକୁ ନୂଆ ତଥ୍ୟ ଦେଇଛନ୍ତି, ସେହିମାନଙ୍କର ଅକ୍ଲାନ୍ତ ପରିଶ୍ରମର ଫଳ ହେଉଛି ଆଜିର ବିକଶିତ ବିଜ୍ଞାନ। ମଣିଷର ଜୀବନର ଅଧିକାଂଶ ସମସ୍ୟାର ସମାଧାନ ହୋଇପାରିଛି। ସେମାନେ ନୀରିଶ୍ୱରବାଦୀ ବୈଜ୍ଞାନିକ ଚିନ୍ତନର ସମର୍ଥକ ଏବଂ ସର୍ବୋପରି ମାନବାଦୀ ମହାପୁରୁଷ। ସେମାନେ ବିଶ୍ୱାସ କରି ନାହାନ୍ତି ଯେ ଆଦିମ କାଳରୁ ଚାଲି ଆସିଥିବା କିମ୍ବା ଧର୍ମଶାସ୍ତ୍ରରେ ଲେଖାଯାଇଥିବା ତଥ୍ୟ ହିଁ ଅନ୍ତିମ ସତ୍ୟ। ସେମାନେ ବିଶ୍ୱାସ କରିନାହାଁନ୍ତି ଯେ ଧର୍ମଶାସ୍ତ୍ର ନିର୍ଦ୍ଦେଶିତ ନିୟମ ଗୁଡ଼ିକୁ ପରିବର୍ତ୍ତନ କରାଯାଇପାରିବ ନାହିଁ। ସେମାନେ ବିଶ୍ୱାସ କରି ନାହାନ୍ତି ଯେ ଭାଗ୍ୟରେ ଯାହା ଲେଖାଥିବ ତାହା ହିଁ ହେବ। ସେମାନେ ନିଜର ଜିଜ୍ଞାସା ଓ କଠିନ ଅଧ୍ୟବସାୟ ବଳରେ ଚମତ୍କାର ଭଳି ଲାଗୁଥିବା ଅନେକ ରହସ୍ୟର ପ୍ରାକୃତିକ ସତ୍ୟ ଖୋଜି ପାଇଛନ୍ତି। କୌଣସି ବୈଜ୍ଞାନିକ ଦ୍ୱାରା ଉଦ୍ଭାବନ କରାଯାଇଥିବା ତଥ୍ୟ ଦୁନିଆର ପ୍ରତ୍ୟେକ ବିଦ୍ୱାନ ସମର୍ଥନ ନକଲା ପର୍ଯ୍ୟନ୍ତ ଗବେଷଣା ଲାଗି ରହିଥାଏ। ଅର୍ଥାତ୍ ବୈଜ୍ଞାନିକ ଅନୁସନ୍ଧାନରେ କେବେ ବି ପୂର୍ଣ୍ଣଚ୍ଛେଦ ନଥାଏ।

ଏଇଠିପ୍ରଶ୍ନ ଉଠୁଛି ଦୁନିଆରେ ବହୁ ସଂଖ୍ୟକ ଆସ୍ତିକବାଦୀ ଯେଉଁ ସମୟରେ ବାସ କରୁଥିଲେ ସେତେବେଳେ ଆଜିର ଭଳି ସୁଖ ସୁବିଧା କାହିଁକି ନଥିଲା ? ପରବର୍ତ୍ତୀ କାଳରେ ଅଳ୍ପ ସଂଖ୍ୟକ ବୈଜ୍ଞାନିକ ଓ ବିଦ୍ୱାନଙ୍କ ଦ୍ୱାରା ବିକାଶ ଲାଭ କରିଥିବା ବିଜ୍ଞାନ ଯୋଗୁଁ ଯଦି ଏତିକି ପ୍ରଗତି ହୋଇପାରିଛି, ତେବେ ଚିନ୍ତା କରି ଦେଖନ୍ତୁ ବହୁ ସଂଖ୍ୟାରେ ଲୋକମାନେ ଯଦି ପ୍ରାକୃତିକ ମାର୍ଗରେ ଚାଲିବାକୁ ପସନ୍ଦ କରିବେ, ତେବେ ଏହି ଦୁନିଆର ସ୍ୱରୂପ କଅଣ ହେବ ?

*******

# ଜାତକ ମିଳନ ଏକ ଭିତ୍ତିହୀନ ବିଶ୍ୱାସ

ଦୁନିଆରେ ମଣିଷ ସମାଜ ବିକାଶ ଲାଭ କଲାପରେ ଗୋଟିଏ ପୁରୁଷ ସହିତ, ଗୋଟିଏ ସ୍ତ୍ରୀର ସହାବସ୍ଥାନକୁ ବିବାହ ନାମରେ ସ୍ୱୀକୃତି ପ୍ରଦାନ କରାଗଲା। କାଳକ୍ରମେ ବିବାହ ଅନୁଷ୍ଠାନ ସହିତ ବିଭିନ୍ନ ରୀତି, ନୀତି, ଯୋଡି ହୋଇଗଲା। ତଥାପି କେତେକ ମୌଳିକ ସର୍ତ୍ତ ରହିଲା - "ବର ଓ କନ୍ୟାଙ୍କ ଧର୍ମ, ଜାତି, ବୟସ, ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ, କର୍ମକୁଶଳତା ବା ଯୋଗ୍ୟତା ସହିତ ପାରିବାରିକ ପୃଷ୍ଠଭୂମି।"

ଆମ ଦେଶରେ ହିନ୍ଦୁଧର୍ମର ବର ଓ କନ୍ୟାଙ୍କପାଇଁ ଉପରୋକ୍ତ ସମସ୍ତ ସର୍ତ୍ତ ପୂରଣ ହୋଇଥିଲେ ବି ବିବାହ ହେବା ସଂଭବ ନାହିଁ, ଯେତେବେଳେ ପର୍ଯ୍ୟନ୍ତ ଦୁହିଁଙ୍କର ଜାତକ ମିଳନ ଠିକ୍ ହୋଇନାହିଁ। ବର କନ୍ୟାଙ୍କ ସଂପର୍କରେ ଦୃଷ୍ଟିଗୋଚର ହେଉଥିବା ସମସ୍ତ ଯୋଗ୍ୟତା ନିକର ପିତା, ମାତା ଓ ଗୁରୁଜନମାନେ ପରୀକ୍ଷା, ନିରୀକ୍ଷା କରି ଠିକ୍ କରିବେ କିନ୍ତୁ ଜାତକରେ ଲେଖାଥିବା ଅଦୃଶ୍ୟ କାହାଣୀକୁ ଭିତ୍ତିକରି ଯୋଗ୍ୟତା ଠିକ୍ କରିବ ଜଣେ ଅବୈଜ୍ଞାନିକ କୋଷ୍ଠୀ ଗଣକ ବା ଅର୍ଦ୍ଧଶିକ୍ଷିତ ଜ୍ୟୋତିଷ ଏବଂ ତାହାର ନିଷ୍ପତ୍ତି ହିଁ ହେବ ଶେଷ ନିଷ୍ପତ୍ତି। ପିତା, ମାତା ଓ ଗୁରୁଜନଙ୍କର ସମସ୍ତ ଅନୁଭବ ଜ୍ଞାନ ଭଣ୍ଡ ହୋଇଯାଏ ଯଦି ଜ୍ୟୋତିଷ କହିବ - "ଏହି ଜାତକର ଗ୍ରହ ଦୋଷ ରହିଛି, ବିବାହ ହେଲେ ଭବିଷ୍ୟତରେ ଅନିଷ୍ଟ ହେବ।" ଜ୍ୟୋତିଷର କଥାରେ ଯଦିଓ କୌଣସି ପ୍ରକାର ତର୍କ ସଂଗତ କିମ୍ବା ବିଜ୍ଞାନ ସମ୍ମତ ତଥ୍ୟ ନଥାଏ, ତଥାପି ଭିତ୍ତିହୀନ ବିଶ୍ୱାସ ଯୋଗୁଁ ସେହି ସୁଯୋଗ୍ୟ ବରକନ୍ୟାଙ୍କ ବିବାହ ହୋଇପାରିବ ନାହିଁ।

ଜ୍ୟୋତିଷ ବିଦ୍ୟା ୧୨ ଗୋଟି ରାଶି, ୯ଗୋଟି ଗ୍ରହ ଏବଂ ୨୭ ଗୋଟି ନକ୍ଷତ୍ରକୁ ନେଇ ଗଣନାର ଇନ୍ଦ୍ରଜାଲ ତିଆରି ହୋଇଛି। ଜ୍ୟୋତିଷ ବିଦ୍ୟା ପ୍ରଥମେ ବେବିଲୋନର ଅଧିବାସୀଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ପ୍ରମାଣ ମିଳୁଛି। ଏହାର ଇତିହାସ ସଂପର୍କରେ ଆଲୋଚନା କଲେ ପ୍ରବନ୍ଧଟି ବହୁତ ଲମ୍ବା ହୋଇଯିବ। ତେଣୁ ଆମର ଆଲୋଚ୍ୟ ବିଷୟ "ଏହା ଏକ ଭିତ୍ତିହୀନ ବିଶ୍ୱାସ" ଭିତରେ ସୀମିତ ରଖିବା। ଫଳତଃ

ଜ୍ୟୋତିଷରେ ଗଣନା କରାଯାଉଥିବା ନଅଟି ଗ୍ରହ ମଧ୍ୟରୁ ଚାରି ଗୋଟି ଗ୍ରହ ପଦବାଚ୍ୟ ନୁହେଁ । (୧) ସୂର୍ଯ୍ୟ ଏକ ଗ୍ରହ ନୁହେଁ ନକ୍ଷତ୍ର, (୨) ଚନ୍ଦ୍ର ଏକ ଗ୍ରହ ନୁହେଁ ଉପଗ୍ରହ, (୩) ରାହୁ ଓ କେତୁ ସୌରମଣ୍ଡଳର ଦୁଇଟି କାଳ୍ପନିକ ବିନ୍ଦୁ, ସେମାନଙ୍କର ସ୍ଥିତି ନାହିଁ । ପୃଥିବୀ ଏକ ଗ୍ରହ ଏବଂ ପ୍ରାଣୀଜଗତକୁ ସବୁଠାରୁ ବେଶୀ ପ୍ରଭାବିତ କରୁଥିଲେ ବି ଜ୍ୟୋତିଷ ଶାସ୍ତ୍ରରେ ଏହାର ଗଣନା ନାହିଁ । ୧୭୮୧ ମସିହାରେ ଆବିଷ୍କୃତ "ୟୁରୋନସ", ୧୮୪୬ ମସିହାରେ ଆବିଷ୍କୃତ "ନେପଚ୍ୟୁନ" ଏବଂ ୧୯୩୦ ମସିହାରେ ଆବିଷ୍କୃତ "ପ୍ଳୁଟୋ" ସମ୍ପର୍କରେ ଜ୍ୟୋତିଷମାନେ ନିରବ ରହୁଛନ୍ତି । ଏହି ତିନୋଟି ଗ୍ରହ ତ ନୂଆ କରି ତିଆରି ହୋଇନାହିଁ । ଅନ୍ୟ ଗ୍ରହମାନଙ୍କ ସହିତ ନିଶ୍ଚୟ ଗଠନ ହୋଇଛି । ତେଣୁ ଏମାନଙ୍କର ପ୍ରଭାବ କଅଣ ମଣିଷ ଉପରେ ପଡୁନାହିଁ ? ଗତ ୨୦୦୩ ମସିହାରେ ସୌରମଣ୍ଡଳର ଦଶମ ଗ୍ରହ ୟୁବି୩୧୩ ଆବିଷ୍କୃତ ହୋଇଛି । ଜ୍ୟୋତିଷ ବିଜ୍ଞାନୀ କଅଣ ଏହି ସମସ୍ତ ଗ୍ରହକୁ ଯୋଗ କରି ନୂତନ ଭାବେ ଗଣନା କରି ସଂଶୋଧିତ ଜ୍ୟୋତିଷ ଶାସ୍ତ୍ର ରଚନା କରିପାରିବେ ? ସେମାନେ ଚାହିଁଲେ ବି ଏପରି କରିପାରିବେ ନାହିଁ । କାରଣ ନୂତନ ସଂସ୍କରଣ ତିଆରି ହେଲେ, ସ୍ପଷ୍ଟ ଭାବେ ପ୍ରମାଣିତ ହୋଇଯିବ ଯେ, ପୂର୍ବରୁ ପ୍ରଚଳିତ ଥିବା ଜ୍ୟୋତିଷ ଶାସ୍ତ୍ର ମିଥ୍ୟା । ଭବିଷ୍ୟତରେ ଯଦି ଆହୁରି କିଛି ଗ୍ରହ ଆବିଷ୍କାର ହୋଇପାରିବ ତେବେ ଏହି ନୂତନ ଜ୍ୟୋତିଷ ଶାସ୍ତ୍ର ବି ମିଥ୍ୟା ପ୍ରମାଣିତ ହୋଇଯିବ । ସେଥିପାଇଁ ବର୍ତ୍ତମାନ ଯାହା ଅଛି, ତାହାକୁ ହିଁ ବିଭିନ୍ନ ପ୍ରକାରରେ ବ୍ୟାଖ୍ୟା କରି ଲୋକମାନଙ୍କ ମନକୁ ଭୁଲେଇ ରଖିବା ହେଉଛି, ବୁଦ୍ଧିମାନର କାମ ।

ଆମେ ଜାଣିବାରେ ଜାତକ ମିଳାଇ ବରକନ୍ୟାଙ୍କ ବିବାହ ଠିକ୍ କରିବା ପ୍ରଥା କେବଳ ଭାରତର ହିନ୍ଦୁ ସଂପ୍ରଦାୟରେ ହିଁ ଦେଖାଯାଏ । ଏହାର ଆରମ୍ଭ କେବେ ଓ କେଉଁଠାରୁ ହୋଇଥିଲା, ସେ ସଂପର୍କରେ ସଠିକ୍ ସୂଚନା ଆମ ପାଖରେ ନାହିଁ । ପୂର୍ବକାଳରେ ନଥିବାର ଉଦାହରଣ ହେଉଛି ରାମ ଓ ସୀତାଙ୍କ ବିବାହ ପୂର୍ବରୁ ଜାତକ ମିଳନ ହୋଇ ନଥିଲା । ସୀତା ସ୍ୱୟମ୍ବର କରି ରାମଙ୍କୁ ବିବାହ କରିଥିଲେ । ଶିବ ଓ ପାର୍ବତୀଙ୍କ ବିବାହ ବେଳେ ବି ଜାତକ ମିଳନ କଥା ଉଲ୍ଲେଖ ନାହିଁ । ଦ୍ରୌପଦୀଙ୍କ ସହ ପଞ୍ଚପତିଙ୍କ ବିବାହ ପାଇଁ ବି ଜାତକ ମିଳନ ହୋଇନାହିଁ । କୃଷ୍ଣ ତ ଅନେକ ବିବାହ କରିଛନ୍ତି କିନ୍ତୁ ଜାତକ ମିଳନ କଥା ଲେଖା ହୋଇନାହିଁ ।

ଜାତକ ଶାସ୍ତ୍ର ବା ଫଳିତ ଜ୍ୟୋତିଷ ଭିତରେ କେତେ ଗଭୀର ଜ୍ଞାନ ଅଛି ଜାଣିବାପାଇଁ ମୁଣ୍ଡ ଖର୍ଚ୍ଚ କରିବା ପୂର୍ବରୁ ସମାଜରେ ଚଳପ୍ରଚଳ ହେଉଥିବା ଜୀବନ୍ତ ନର ଓ ନାରୀଙ୍କୁ ଦେଖି ମନରେ କେତେକ ସହଜ ଓ ସାଧାରଣ ପ୍ରଶ୍ନ ଉଠୁଛି ଯେ, ଦୁନିଆର କୋଟି କୋଟି ନରନାରୀ ଏବଂ ଭାରତରେ ବାସ କରୁଥିବା ଭିନ୍ନ ଧର୍ମସଂପ୍ରଦାୟର ନରନାରୀ ବି ଜାତକ ନ ମିଳାଇ ବିବାହ କରୁଛନ୍ତି । ସେମାନଙ୍କ ଦାମ୍ପତ୍ୟ ଜୀବନ ତ ସୁଖେ, ଦୁଃଖେ ଚାଲିଛି । ଆମ ଦେଶର କେବଳ ଗୋଟିଏ ସଂପ୍ରଦାୟ ପାଇଁ ଜାତକ ମିଳନ ଅନିବାର୍ଯ୍ୟ କାହିଁକି ? ଜାତକ ମିଳନ କରାଇ ବିବାହ କରିଥିବା ସମସ୍ତ ଦମ୍ପତି କଅଣ ସୁଖ, ଶାନ୍ତିରେ ରହିପାରୁଛନ୍ତି ? ସେ ଦୁହିଁଙ୍କ ମଧ୍ୟରୁ କାହାରି ଜଣକର କ'ଣ ଅକାଳ ମୃତ୍ୟୁ ହେଉନାହିଁ କି ?

ଜ୍ୟୋତିଷ ପାଠରେ ଗଣନା ଭୁଲ କାହିଁକି ହେଲା ବୋଲି କେହି ପ୍ରଶ୍ନ କଲେ, ସେମାନେ ନିଜକୁ ବଞ୍ଚେଇବା ପାଇଁ କହନ୍ତି - "ମୋତେ ଜାତକରେ ଲିଖିତ ଭୁଲ ତଥ୍ୟ ଦିଆଯାଇଥିଲା ।"

କିନ୍ତୁ ଆମେ ଜାଣିଛୁ ଅନେକ ପ୍ରସିଦ୍ଧ ଜ୍ୟୋତିଷଙ୍କ ନିଜର ଦାମ୍ପତ୍ୟ ଜୀବନ ସୁଖଦନୁହେଁ । କେତେକ ଜ୍ୟୋତିଷଙ୍କ କନ୍ୟା ବିଧବା ହୋଇଛନ୍ତି, କେତେକ ଜ୍ୟୋତିଷଙ୍କ ପୁଅ ଓ ଝିଅ ବିବାହ ବିଚ୍ଛେଦହୋଇ ଅଲଗା ରହୁଛନ୍ତି । ଆଜିର ଯୁଗରେ କେତେକ ଜ୍ୟୋତିଷ ନିଜର ବୋହୂ ଦ୍ୱାରା ଯୌତୁକ ନିର୍ଯ୍ୟାତନା କେଶ୍ କରିଥିବାରୁ ଜେଲଦଣ୍ଡ ଭୋଗ କରିଛନ୍ତି ।

ଏଇଠି ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ଉଠୁଛି ଯେ - ଜ୍ୟୋତିଷଙ୍କ ଜାତକରେ ତ ଭୁଲ ତଥ୍ୟ ରହିବା କଥା ନୁହେଁ । ଭଲ କରି ଗଣନା କରି ଶୁଭ ବେଳାରେ ହିଁ ବିବାହ କାର୍ଯ୍ୟ ସମ୍ପନ୍ନ କରିଥିବେ । ତଥାପି ସେମାନେ ଏତେ ଦୁଃଖ ଭୋଗ କରୁଛନ୍ତି କାହିଁକି ?

ଜନସାଧାରଣଙ୍କ ମନରେ ବି ଏହି ଭଳି ପ୍ରଶ୍ନ ଉଠୁଥିବ ଏବଂ ତର୍କ ସଂଗତ ଉତ୍ତର ବି ପାଉଥିବେ କିନ୍ତୁ ଭବିଷ୍ୟତରେ ଅନିଷ୍ଟ ହେବାର ମାନସିକ ଭୟ ରହୁଥିବାରୁ ସମସ୍ତେ ଯୁକ୍ତି ତର୍କ କରିବାକୁ ଚାହୁଁନାହାଁନ୍ତି । ଏଇଟା ହିଁ ହେଉଛି ସବୁଠୁ ବଡ ପରିତାପର ବିଷୟ । ସମାଜର ଶିକ୍ଷିତ ତଥା ଉଚ୍ଚଶିକ୍ଷିତ ଡାକ୍ତର, ଇଞ୍ଜିନିୟର, ଜର୍ଜ, ଓକିଲ, ପ୍ରଫେସର, ଆଇ.ଏ.ଏସ୍, ଆଇ.ପି.ଏସ୍ ଓ ଏ.ଏସ୍, ଅଫିସର ପର୍ଯ୍ୟନ୍ତ

ସମସ୍ତେ ଜାତକର ମାୟାଜାଲରୁ ମୁକୁଳି ପାରିନାହାଁନ୍ତି । ସେମାନଙ୍କୁ ଦେଖି ସାଧାରଣ ଜନତା ମଧ୍ୟ ଜ୍ୟୋତିଷ ଆଡକୁ ବେଶୀ ଆକୃଷ୍ଟ ହେଉଛନ୍ତି । ମଜାକଥା ହେଉଛି ଯେ ନିଜକୁ ଆଧୁନିକ ବୋଲାଉଥିବା ଯୁବାବର୍ଗ ଋଢିବାଦୀ ପରମ୍ପରାକୁ ଅସ୍ୱୀକାର କରି ଉନ୍ମୁକ୍ତ ଜୀବନ ଅତିବାହିତ କଲେ ବି ବିବାହ ପ୍ରସଙ୍ଗ ବେଳକୁ ଜାତକ ମିଳାଇବାପାଇଁ ଜ୍ୟୋତିଷଙ୍କ ପାଖକୁ ଦୌଡିଯାଆନ୍ତି । ପୁଅ ମୁଣ୍ଡର ନୁଖୁରାବାଳରେ ତେଲ ଟିକିଏ ଲଗେଇବାପାଇଁ ମାଆ ବୁଝେଇଲେ, ତାଙ୍କୁ ବିରୋଧ କରି ଯୁକ୍ତି କରୁଥିବା ଆଧୁନିକ ଯୁବକଟି ଜ୍ୟୋତିଷ ମୁହଁରୁ ଅବାସ୍ତବ ଗ୍ରହ, ନକ୍ଷତ୍ରର ମନଗଢା କାହାଣୀକୁ ଶୁଣି ମୁଣ୍ଡପାତି ବିଶ୍ୱାସ କରିବା ହାସ୍ୟାସ୍ପଦନୁହେଁ କି ? ସେମାନେ କେଉଁ ଦୃଷ୍ଟିରୁ ଆଧୁନିକ ବୋଲାଉଛନ୍ତି ?

ଆଉ ଗୋଟିଏ ମଜା କଥା ହେଉଛି ଯେ, ପ୍ରେମ କରି ଦୁହେଁ ଦୁହିଁଙ୍କୁ ବିବାହ କରିବାପାଇଁ ନିଷ୍ପତ୍ତି ନେଇ ସାରିଥିଲେ ବି ମନକୁ ବୁଝେଇବା ପାଇଁ ଦୁହେଁ ଜାତକ ଧରି ଜ୍ୟୋତିଷଙ୍କ ଦ୍ୱାରସ୍ଥ ହୁଅନ୍ତି । ଜ୍ୟୋତିଷଙ୍କ ଗଣନା ଅନୁସାରେ ହେଉ କିମ୍ବା ସେ ଜାଣି ଶୁଣି ଅଧିକ ଧନ ଲୋଭରେ କହିବେ, "ତୁମର ଏହି ଜାତକରେ ଗ୍ରହ ଦୋଷ ରହିଛି । ପ୍ରେମୀଯୁଗଳ ଜ୍ୟୋତିଷଙ୍କୁ ଅନୁରୋଧ କରିବେ, ଗ୍ରହ ଦୋଷ କାଟିବାପାଇଁ ଉପାୟ କରନ୍ତୁ ।" ଏହି ସୁଯୋଗରେ ଜ୍ୟୋତିଷ ନିଶ୍ଚିତ ଭାବେ ଉପାୟ ଖୋଜି ଗ୍ରହ ଦୋଷ ଦୂର କରି "ରାଜ ଯୋଟକ"ର ପ୍ରମାଣ ପତ୍ର ଦେଇ ଦିଅନ୍ତି । ମନମୁତାବକ ଦକ୍ଷିଣା ଠକେଇ ନିଅନ୍ତି ।

ଜାତକ ମିଳନରେ ସବୁଠାରୁ କ୍ଷତିକାରକ ପରିଣାମ ହେଉଛି, ବେଳେବେଳେ ଜାତକରେ ଲେଖାଥିବା ଗ୍ରହ, ରାଶି ଓ ନକ୍ଷତ୍ରଙ୍କ ଚକରରେ ଦୁଇଟି ଭିନ୍ନ ରୁଚି ଓ ଭିନ୍ନ ଚରିତ୍ରର ବର କନ୍ୟାଙ୍କୁ ବିବାହ ବନ୍ଧନରେ ବାନ୍ଧି ଦିଆଯାଉଛି । ଯାହା ଫଳରେ ଦୁହିଁଙ୍କ ଭିତରେ ମତାନ୍ତର ଲାଗିରହୁଛି । କିଛିଦିନପରେ ବିବାହ ବିଚ୍ଛେଦଆଡକୁ କଥା ବଢି ଯାଉଛି । ଆଉ କେତେକ ଘରେ ହତ୍ୟା ଓ ଆତ୍ମହତ୍ୟା ଭଳି ଅପରାଧ ବି ଘଟୁଛି । ଏହିଭଳି କିଛି ନ ହେଲେ ବି ଆଜୀବନ ଦୁହିଁଙ୍କ ଜୀବନ ଅଶାନ୍ତିରେ ହିଁ କଟୁଛି ।

ଜାତକ ବା ଜନ୍ମକୁଣ୍ଡଳୀ ହେଉଛି ହିନ୍ଦୁ ସ୍ତ୍ରୀ ଓ ପୁରୁଷଙ୍କ ସଂପୂର୍ଣ୍ଣ ଜୀବନ କାଳର ଲେଖାଯୋଖା । ସେ କେଉଁ ବୟସରେ କଅଣ ପାଇବ ? କଅଣ ହରାଇବ? ବିବାହିତ ଜୀବନ କେମିତି କଟିବ? କେବେ ମୃତ୍ୟୁ ହେବାର ସମ୍ଭାବନା ଆଦି ଜାତକ

ପୃଷ୍ଠାରେ ଗଣନାକରି ଲେଖାଯାଇଥାଏ । ଏହାର ବିଶ୍ୱାସନୀୟତା ଯଦିଓ ଶୂନ୍ୟ ପ୍ରତିଶତ କିନ୍ତୁ ଭୟ ଅପରିମିତ ।

ପୂର୍ବକାଳରେ ରାଜା ମହାରାଜାଙ୍କ ଦରବାରରେ ରାଜ ପୁରୋହିତ, ରାଜ ଜ୍ୟୋତିଷ ଆଦି ନିଯୁକ୍ତି ପାଉଥିଲେ । ସେହିମାନଙ୍କର ଗଣନା ଅନୁସାରେ ଶୁଭ ଓ ଅଶୁଭ ମୁହୂର୍ତ୍ତ ଦେଖି ରାଜାଙ୍କୁ କାମ କରିବାକୁ ହେଉଥିଲା । ରାଜାମାନଙ୍କର ଶାସନ ସମାପ୍ତ ହୋଇ ଗଣତନ୍ତ୍ର ଶାସନ ଆରମ୍ଭ ହେଲାପରେ, ଆମ ଦେଶରେ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଏମ.ପି.ତଥା ଏମ.ଏଲ.ଏ ଆଦି ଶାସନ କରୁଛନ୍ତି । ଜନତାଙ୍କ ଦ୍ୱାରା ନିର୍ବାଚିତ ହୋଇଥିବା ଜନପ୍ରତିନିଧିମାନେ ମଧ୍ୟ ଜ୍ୟୋତିଷମାନଙ୍କ ନିର୍ଦ୍ଦେଶରେ ଶୁଭ ମୁହୂର୍ତ୍ତ ଦେଖି ପ୍ରଚାର ଆରମ୍ଭ କରିବେ, ପ୍ରାର୍ଥୀପତ୍ର ଦାଖଲ କରିବେ, ବିଧାନ ସଭାରେ ଶୁଭ ମୁହୂର୍ତ୍ତ ଦେଖି ଶପଥ ଗ୍ରହଣ କରିବେ । ସେଥିପାଇଁ କେତେକ ପ୍ରସିଦ୍ଧ ଜ୍ୟୋତିଷଙ୍କୁ ନିଜର ଗୁରୁ ମାନୁଛନ୍ତି । ସେମାନଙ୍କ ଶେଷ ପରିଣତି କଅଣ ହୁଏ ? ସମସ୍ତେ ଜାଣନ୍ତି ।

ବିଜ୍ଞାନକୁ ବେଖାତିର କରି ଜ୍ୟୋତିଷର ଗଣନାକୁ ବିଶ୍ୱାସ କରି ଗର୍ଭବତୀ ସ୍ତ୍ରୀର ପେଟରେ ପୁଅ ଅଛି ନା ଝିଅ ଜାଣିବାକୁ ଅନେକ ଲୋକ ଚାହାଁନ୍ତି । କାରଣ ପୁଅ ହେଲେ ପରମ୍ପରାକ୍ରମେ ନିଜର ପିତୃପୁରୁଷଙ୍କୁ ଶ୍ରାଦ୍ଧ କରି ପିଣ୍ଡଦାନ କରିବ । ଝିଅ ହେଲେ ଯୌତୁକ ସହ ପର ଘରକୁ ଚାଲିଯିବ । ଘରେ ପୁଅ ନଥିଲେ ଏବଂ ଗର୍ଭରେ ଝିଅ ଥିବା ସନ୍ଦେହ ହେଲେ କନ୍ୟା ଭ୍ରୂଣ ହତ୍ୟା କରିବା ଆଜି ଏକ ଜ୍ୱଳନ୍ତ ସମସ୍ୟା ଦେଖାଦେଇଛି । କାନୁନ ଅନୁସାରେ ଭ୍ରୂଣହତ୍ୟା ଏକ ଅପରାଧ । ତେଣୁ ଯଦି ଘଟଣାଟି ଧରାପଡିଯାଏ, ତେବେ ଶିଶୁର ବାପା, ମାଆ, ଜେଜେମା, ଜେଜେବାପା ଇତ୍ୟାଦି ଜେଲ ଦଣ୍ଡ ଭୋଗ କରନ୍ତି । କିନ୍ତୁ ଯେଉଁ ପଣ୍ଡିତ ବା ଜ୍ୟୋତିଷ ପୁତ୍ର ପ୍ରାପ୍ତିର ଲୋଭ ସେମାନଙ୍କ ମୁଣ୍ଡରେ ପୂରାଇ ଶିଶୁ ହତ୍ୟା କରିବାକୁ ପ୍ରୋତ୍ସାହିତ କରିଥିଲା, ତାହାର କିଛି ବି ହୁଏ ନାହିଁ । ପରଦା ପଛରେ ରହିଯାଇଥିବା ସୂତ୍ରଧର ଓ ଖଳନାୟକ ପ୍ରତି କେହି ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି ନାହିଁ ।

ଫ୍ରାନ୍ସର ପ୍ରସିଦ୍ଧ ଲେଖକ "ଭାଲଟିୟର' କହିଛନ୍ତି ଜ୍ୟୋତିଷ ସହିତ ଖଗୋଳ ବିଜ୍ଞାନର ସଂପର୍କ ହେଉଛି ଠିକ୍ ଅନ୍ଧ ବିଶ୍ୱାସର ଧର୍ମ ସହିତ ରହୁଥିବା ସଂପର୍କ ଭଳି ।"

ଜ୍ୟୋତିଷମାନେ ଭାଗ୍ୟବାଦୀ ଲୋକମାନଙ୍କ ମାନସିକ ଦୁର୍ବଳତାକୁ ଭଲ ଭାବେ ଚିହ୍ନିପାରନ୍ତି । ପ୍ରତ୍ୟେକ ସଫଳ ଜ୍ୟୋତିଷ ନିଷ୍ଚିତ ଭାବେ ଜଣେ ମନସ୍ତାତ୍ତ୍ୱିକ, ଏଥିରେ ସନ୍ଦେହ ନାହିଁ । ସେମାନେ ଚତୁରତାର ସହିତ କେତୋଟି ପ୍ରଶ୍ନ କରି ବ୍ୟକ୍ତିର ରୁଚି, ଚରିତ୍ର, ଆବଶ୍ୟକତା ଓ ଦୁର୍ବଳତା ସଂପର୍କରେ ଜାଣିପାରନ୍ତି । ତା'ପରେ ଶୋଷଣ କରିବା ସହଜ ହୋଇଥାଏ । ଭବିଷ୍ୟତରେ କେତେକ ଗ୍ରହ ଦୋଷରୁ ଅନିଷ୍ଟ ହେବାର ସମ୍ଭାବନା ଦର୍ଶାଇ ବ୍ୟକ୍ତିଙ୍କୁ ଭୟଭୀତ କରନ୍ତି । ଗ୍ରହ ଦୋଷରୁ ମୁକ୍ତି ପାଇବାପାଇଁ, ପୂଜା, ଯଜ୍ଞ, ଦାନ, ଦକ୍ଷିଣା ଆଦି କରିବା ପାଇଁ ଉପଦେଶ ଦିଅନ୍ତି । ଅସଲ ଉଦ୍ଦେଶ୍ୟ ହେଉଛି ସାଧାରଣ ଧର୍ମବିଶ୍ୱାସୀ ଲୋକମାନଙ୍କ ପକେଟରୁ ଯେତେ ସମ୍ଭବ ଟଙ୍କା ଲୁଟିନେବା ।

ଆଜି ପର୍ଯ୍ୟନ୍ତ ଏମିତି କୌଣସି ବିଦ୍ୟା ବା ଜ୍ଞାନ ମନୁଷ୍ୟ ପାଖରେ ନାହିଁ । ଯାହାଦ୍ୱାରା ଭବିଷ୍ୟତରେ କଅଣ ଘଟିବ, ସଠିକ ଭାବେ ଜାଣିପାରିବ ।

ଜ୍ୟୋତିଷ ଏବଂ ବୈଜ୍ଞାନିକମାନଙ୍କ ଭିତରେ ପ୍ରଭେଦକଅଣ ? ଜ୍ୟୋତିଷମାନେ କେବଳ କଳ୍ପନା, ଅନୁମାନ ଏବଂ ଗ୍ରହମାନଙ୍କର ଭୁଲ ତଥ୍ୟ ଆଧାରରେ ଭବିଷ୍ୟତ ଫଳ ଘୋଷଣା କରିଥା'ନ୍ତି । ବୈଜ୍ଞାନିକମାନେ ଗବେଷଣା ଓ ଅନୁସନ୍ଧାନ କରି ଯେଉଁ ତଥ୍ୟ ପାଇଥା'ନ୍ତି, ସେହି ଅନୁସାରେ ଭବିଷ୍ୟତ ଫଳ ସଂପର୍କରେ ଘୋଷଣା କରିଥା'ନ୍ତି । ସେଥିପାଇଁ ଜ୍ୟୋତିଷଙ୍କ ଦାବି ଆଂଶିକ ଭାବେ ସତ୍ୟ କିମ୍ବା ସଂପୂର୍ଣ୍ଣ ଭାବେ ଅସତ୍ୟ ହୋଇଥାଏ । କିନ୍ତୁ ବୈଜ୍ଞାନିକଙ୍କ ଦାବି ସଂପୂର୍ଣ୍ଣ ସତ୍ୟ କିମ୍ବା ଆଂଶିକ ସତ୍ୟ ହୋଇଥାଏ ।

ବୈଜ୍ଞାନିକ ଏବଂ ଜ୍ୟୋତିଷମାନଙ୍କ ଭିତରେ ଆଉ ଗୋଟିଏ ପ୍ରଭେଦ ହେଉଛି ଯେ, ବୈଜ୍ଞାନିକମାନେ କେବେ ବି ନିଜର ଗବେଷଣା ଲବ୍ଧ ଜ୍ଞାନକୁ ଚରମ ସତ୍ୟ ବୋଲି ଦାବି କରନ୍ତି ନାହିଁ । ଆଜି ଯାହା ମିଳିଛି, ଭବିଷ୍ୟତରେ ଏହାଠାରୁ କିଛି ଅଧିକ ମିଳିପାରେ ବୋଲି ସ୍ୱୀକାର କରନ୍ତି । କିନ୍ତୁ ଜ୍ୟୋତିଷମାନେ ଗଣନା କରି କହିଥିବା ତଥ୍ୟସଂପୂର୍ଣ୍ଣ ଭାବେ ସତ୍ୟ, ଏଥିରେ ଦ୍ୱିମତ ନାହିଁ ବୋଲି ଗର୍ବର ସହ ଦାବି କରିଥାନ୍ତି ।

ପ୍ରକୃତରେ ଜ୍ୟୋତିଷ ବିଦ୍ୟା ଏକ ଭ୍ରମଜାଲ । ବିଜ୍ଞାନ ସମ୍ମତ ନୁହେଁ । ଫଳିତ ଜ୍ୟୋତିଷ ବିଷୟରେ ଥିବା ଭୁଲ ଧାରଣା ଦୂର ହୋଇପାରିଲେ, ଜାତକ ମିଳନର ଚକ୍ରାନ୍ତରୁ ମୁକ୍ତି ପାଇ ଯୁବକ ଓ ଯୁବତୀମାନେ ନିଜର ମନ ପସନ୍ଦର ଜୀବନସାଥୀ ପାଇପାରିବେ । ପରିବାର ସୁଖୀ ହେଲେ, ସମାଜ ବି ସୁଖୀ ହେବ । ଅନ୍ୟାନ୍ୟ ବିକଶିତ ଦେଶମାନଙ୍କ ଭଳି ଆମଦେଶ ବି ବିକଶିତ ହୋଇପାରିବ ।

*******

# ମୁହୂର୍ତ୍ତ ଗଣନାର ଚକ୍ରବ୍ୟୂହ

ମୁହୂର୍ତ୍ତ ଏକ ସାଧାରଣ ଶବ୍ଦ । ଯାହାର ଅର୍ଥ ହେଉଛି ସମୟର କିଛି ଅଂଶ । କିନ୍ତୁ ଆଧ୍ୟାତ୍ମବାଦୀମାନେ ଯେତେବେଳେ ମୁହୂର୍ତ୍ତ ପୂର୍ବରୁ ଶୁଭ କିମ୍ବା ଅଶୁଭ ଶବ୍ଦଟିଏ ଯୋଡି ଦିଅନ୍ତି, ସେତେବେଳେ ମୁହୂର୍ତ୍ତର ଗୁରୁତ୍ୱ ବଢିଯାଏ । ଧର୍ମଭୀରୁ ଜନତା ମୁହୂର୍ତ୍ତର ସାଧାରଣ ଅର୍ଥରୁ ଅସାଧାରଣ ମହତ୍ତ୍ୱ ଖୋଜିବା ପାଇଁ ନିଜର ମାନସିକ ଶାନ୍ତି ନଷ୍ଟ କରି ଦିଅନ୍ତି । କାହାରି ମନରେ ପ୍ରଶ୍ନ ଉଠେ ନାହିଁ ଯେ ଶୁଭ ବା ଅଶୁଭ ମୁହୂର୍ତ୍ତର ମାନେ କଅଣ ? ଏହାର ଆବଶ୍ୟକତା କେତେ ? ଏକା ମୁହୂର୍ତ୍ତରେ ତ ଦୁନିଆରେ ଅନେକ ସୁଘଟଣା ଓ ଦୁର୍ଘଟଣା ଘଟି ଯାଉଛି । ଅର୍ଥାତ୍ ସମସ୍ତ ମୁହୂର୍ତ୍ତ ଶୁଭ ଓ ଅଶୁଭ । ଜୀବଜଗତରେ କେବଳ ମଣିଷ ହିଁ କାହିଁକି ଶୁଭ ଅଶୁଭ ମୁହୂର୍ତ୍ତ ପାଇଁ ଚିନ୍ତାଗ୍ରସ୍ତ ରହୁଛି ? ମଣିଷ ଜୀବନରେ ଜନ୍ମ, ବିବାହ, ଚାକିରି, ବିଦେଶ ଗମନ, ଗୃହ ପ୍ରବେଶ, ବ୍ୟବସାୟ ଆରମ୍ଭ କରିବା, ନେତାମାନଙ୍କ ଇଲେକ୍‌ସନ ଲଢିବା ଇତ୍ୟାଦି ଅନେକ କାମ ପାଇଁ ଶୁଭ ମୁହୂର୍ତ୍ତ ଖୋଜିବା ଏକ ସାଧାରଣ କଥା । ଶୁଭ ମୁହୂର୍ତ୍ତ ଗଣନା କରି କହିବା ଏକ ନିର୍ଦ୍ଦିଷ୍ଟ ପଣ୍ଡିତ ଗୋଷ୍ଠୀଙ୍କ କାମ । ଉଚ୍ଚଶିକ୍ଷା ପ୍ରାପ୍ତ ଜଣେ ଆଇ.ଏ.ଏସ ଅଫିସର, କଲେଜର ପ୍ରାଧ୍ୟାପକ, ଗବେଷଣାଗାରରେ ଗବେଷଣା କରୁଥିବା ବୈଜ୍ଞାନିକ, ଡାକ୍ତରୀ ଶାସ୍ତ୍ରରେ ନିପୁଣ ଜଣେ ସଫଳ ଡାକ୍ତର କିମ୍ବା ଜଣେ ଜ୍ୟୋତିର୍ବିଜ୍ଞାନୀ ବି ଶୁଭ ଅଶୁଭ ମୁହୂର୍ତ୍ତ ଗଣନା କରିପାରିବେନି । କିନ୍ତୁ ଜଣେ ମାଟ୍ରିକ ପାସ କରିନଥିବା ବ୍ୟକ୍ତି ବି ପାଞ୍ଜି ବା ପଞ୍ଚାଙ୍ଗ ଅଧ୍ୟୟନ କରି ଶୁଭ ଓ ଅଶୁଭ ମୁହୂର୍ତ୍ତର ଚକ୍ରବ୍ୟୂହ ଭିତରକୁ ସହଜରେ ସମସ୍ତ ଶିକ୍ଷିତ ବ୍ୟକ୍ତିଙ୍କୁ ଠେଲି ଦେଇପାରେ । ଏହା ଏକ ବିଡମ୍ବନା ନୁହେଁ କି ? ସମସ୍ତେ ଶୁଭ ମୁହୂର୍ତ୍ତ ଜାଣିବାକୁ ଚାହାଁନ୍ତି । କେହି ଅଶୁଭ ମୁହୂର୍ତ୍ତ ଜାଣିବାକୁ ଚାହାଁନ୍ତି ନାହିଁ । ସତେ ଯେମିତି ସମୟର କିଛି ଅଂଶ ହିଁ ଶୁଭ ବାକି ସବୁ ଅଶୁଭ ସମୟ ।

ଆଜିକାଲି ଛୁଆ ଜନ୍ମ କରେଇବା ପାଇଁ ଶୁଭ ମୁହୂର୍ତ୍ତ କହିଥା'ନ୍ତି ଜ୍ୟୋତିଷମାନେ । ପ୍ରାକୃତିକ ଭାବେ ଜନ୍ମ ଗ୍ରହଣ କରିବା ପୂର୍ବରୁ ଡାକ୍ତରମାନେ ମାଆର ପେଟକାଟି ଛୁଆକୁ ଶୁଭ ମୁହୂର୍ତ୍ତରେ ବାହାର କରି ଆଣନ୍ତି । ପ୍ରଶ୍ନ ଉଠୁଛି - ସେହି

ଛୁଆମାନେ କଅଣ ସତରେ ତାଙ୍କ ଜୀବନରେ କେବଳ ସଫଳତା ହିଁ ପାଇବେ ? ବିବାହ ପାଇଁ ବି ଶୁଭ ମୁହୂର୍ତ୍ତକୁ ଅତିବେଶୀ ଗୁରୁତ୍ୱ ଦିଆଯାଇଥାଏ। ପ୍ରଶ୍ନ ଉଠୁଛି - ଶୁଭ ମୁହୂର୍ତ୍ତରେ ସଂପନ୍ନ କରାଯାଇଥିବା ସମସ୍ତ ବିବାହ କଅଣ ସଫଳ ହେଉଛି ?

ସାଧାରଣ ଜନତା ଜାଣନ୍ତି ନାହିଁ ଯେ ଏହି ମୁହୂର୍ତ୍ତ ଗଣନାର ସୂତ୍ରଧର କିଏ ଏବଂ କେଉଁଠୁ ଆରମ୍ଭ ହୁଏ ? ଭାରତର ଦୁଇ ଗୋଟି ଜାଗାରୁ ପ୍ରତିବର୍ଷ ପଞ୍ଚାଙ୍ଗ ବା ପଞ୍ଜିକା ନାମରେ ଯେଉଁ ପୁସ୍ତକ ପ୍ରକାଶିତ ହୁଏ, ସେହି ପୁସ୍ତକ ଅନୁସାରେ ସମସ୍ତ ପ୍ରକାର କର୍ମକାଣ୍ଡ, ପୂଜାପାଠ ଆରମ୍ଭ ଓ ଶେଷକରିବାର ସମୟ ନିର୍ଘଣ୍ଟ ନିର୍ଦ୍ଧାରଣ ହୁଏ। ପ୍ରଥମ : ପୁରୀସ୍ଥିତ ଗୋବର୍ଦ୍ଧନ ଧାମରେ ଅବସ୍ଥାନ କରୁଥିବା ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀ ଏବଂ ଦ୍ୱିତୀୟ ଜ୍ୟୋତିଷ ଧାମରେ ଅବସ୍ଥାନ କରୁଥିବା ଶଙ୍କରାଚାର୍ଯ୍ୟ ସ୍ୱରୂପାନନ୍ଦ। ଏହି ଦୁଇ ଶଙ୍କରାଚାର୍ଯ୍ୟଙ୍କ ପ୍ରତ୍ୟେକଟି ବକ୍ତବ୍ୟ ହିନ୍ଦୁଧର୍ମାବଲମ୍ବୀ ମାନଙ୍କପାଇଁ ଅକାଟ୍ୟ ବଚନ। ସୂର୍ଯ୍ୟ ଯେଉଁଭଳି କୌଣସି ଦିଗର ଅଧୀନ ନୁହେଁ ବରଂ ସୂର୍ଯ୍ୟ ଯେଉଁ ଦିଗରୁ ଉଦୟ ହେବ ତାହା ହିଁ ପୂର୍ବ ଦିଗ ବୋଲି ମାନ୍ୟ ହେବ, ସେହିଭଳି ଶଙ୍କରାଚାର୍ଯ୍ୟମାନେ କୌଣସି ଧର୍ମର ଅଧୀନ ନୁହଁନ୍ତି, ବରଂ ସେମାନେ ଯାହା ନିର୍ଦ୍ଦେଶ ଦେବେ ତାହା ହିଁ ଧର୍ମବାଣୀ ବୋଲି ମାନ୍ୟହେବ।

ଏହାର ଉଦାହରଣ ଦେଖନ୍ତୁ :-୨୦୧୪ ସାଲରେ ପୁରୀର ରଥଯାତ୍ରା ସମୟରେ ଭକ୍ତମାନେ ରଥ ଉପରେ ଚଢି ଶ୍ରୀଜିଉଙ୍କୁ ଛୁଇଁଲେ ମହାପାପ ହେବ ବୋଲି ଶଙ୍କରାଚାର୍ଯ୍ୟ କହିଦେଲେ ଏବଂ ଭକ୍ତଠାରୁ ଶାସକ ପର୍ଯ୍ୟନ୍ତ ସମସ୍ତେ ମୁଣ୍ଡପାତି ମାନିନେଲେ (?)। ଦ୍ୱିତୀୟରେ ଶଙ୍କରାଚାର୍ଯ୍ୟ ସ୍ୱରୂପାନନ୍ଦ ସେହି ବର୍ଷ ଘୋଷଣା କରିଦେଲେ ଶିରିଡି ସାଇବାବାଙ୍କୁ ପୂଜା କରିବା ଆବଶ୍ୟକ ନାହିଁ। ଅବଶ୍ୟ ଧର୍ମଗୁରୁଙ୍କ ଏଇ ନିର୍ଦ୍ଦେଶ ବିରୋଧରେ ସାଇଭକ୍ତ ମାନେ ତୀବ୍ର ପ୍ରତିବାଦ ଜଣେଇଛନ୍ତି। ଦୁଇ ଦଳର ଭକ୍ତମାନଙ୍କ ଭିତରେ ଭବିଷ୍ୟତରେ କେବେ ସଂଘର୍ଷ ନ ଘଟିବ ସେ କଥା ଗ୍ୟାରେଣ୍ଟି ଦେଇ କହି ହେବନି।

ସମସ୍ତେ ବିନା ତର୍କରେ ଶୁଭ ଓ ଅଶୁଭ ମୁହୂର୍ତ୍ତକୁ ମାନି ପୂଜା ଅନୁଷ୍ଠାନ କରିଥା'ନ୍ତି। ମଜାକଥା ହେଉଛି ଯେ ଏହି ମୁହୂର୍ତ୍ତର ଗଣନା ଅନୁସାରେ କେତେକ

ପର୍ବ, ପର୍ବାଣୀ ଗୋଟିଏ ଦିନ ବଦଳରେ ଦୁଇଦିନ ପାଳନ କରିବାପାଇଁ ପାଞ୍ଜିରେ ନିର୍ଦ୍ଦେଶ ରହିଥିବା ଲକ୍ଷ୍ୟକରି ଛତିଶଗଡ କିଲ୍ଲାର ମହାସମୁନ୍ଦର ଜଣେ ବରିଷ୍ଠ ଅଧିବକ୍ତା ଜୟନାରାୟଣ ଦୁବେ ଗତ ୨୮.୭.୨୦୧୪ ତାରିଖରେ କୋର୍ଟ ମାଧ୍ୟମରେ ୪୦ ଗୋଟି ଧାର୍ମିକ ସଂସ୍ଥାକୁ ନୋଟିସ ପଠେଇଦେଲେ । ତାଙ୍କର ଅଭିଯୋଗ ହେଉଛି "ଚଳିତ ବର୍ଷ ଅଗଷ୍ଟମାସରେ ପଡୁଥିବା ଦୁଇଟି ପର୍ବ ହଲାଷ୍ଟମୀ ଓ କନ୍ମାଷ୍ଟମୀକୁ ପାଳନ କରିବାପାଇଁ ଧର୍ମାଚାର୍ଯ୍ୟମାନେ କାହିଁକି ନିର୍ଦ୍ଦେଶ ଦେଇଛନ୍ତି ?" ଅଧିବକ୍ତା ଜୟନାରାୟଣ ୧୯୬୭ ଠାରୁ ୨୦୧୪ ମସିହା ଭିତରେ ପ୍ରକାଶ ପାଇଥିବା ୧୦କୋଟି ପଞ୍ଜିକାକୁ ଅଧ୍ୟୟନ କରି ପ୍ରମାଣ କରିଛନ୍ତି ଯେ ପଣ୍ଡିତମାନଙ୍କ ଦ୍ୱାରା ପର୍ବପର୍ବାଣୀ ଓ ଶୁଭକାର୍ଯ୍ୟ ପାଇଁ ଗଣନା କରାଯାଉଥିବା ଶୁଭମୁହୂର୍ତ୍ତ ଗୁଡିକରେ ଅନେକ ବିରୋଧାଭାସ ରହିଛି । ଭାରତରେ ପ୍ରଥମଥରପାଇଁ "ମୁହୂର୍ତ୍ତ"ଗଣନାରେ ରହୁଥିବା ଭିନ୍ନଭିନ୍ନ ମତ ଉପରେ ପ୍ରଶ୍ନ ଉଠେଇଛନ୍ତି । ଆମେ ସମସ୍ତେ ବି ଦେଖୁଛୁ ହିନ୍ଦୁ ଧର୍ମର ଅନେକ ପର୍ବ ଦେଶର ବିଭିନ୍ନ ଭାଗରେ ଅଲଗା ଅଲଗା ଦିନ ପାଳନ କରାଯାଉଛି । ହୋଲି ଦିପାବଳୀ ଉତ୍ତର ଭାରତରେ ଯେଉଁ ଦିନ ପାଳନ କରାଯାଉଛି, ତାହା ଦକ୍ଷିଣ ଭାରତରୁ ଦିନେ ଆଗରୁ କିମ୍ବା ଦିନେ ପରେ ପାଳନ କରାଯାଉଛି । ମହାଲକ୍ଷ୍ମୀ ପୂଜା ଉତ୍ତର ଭାରତରେ ଗୁରୁବାର ଦିନ ହେଉଥିବା ସ୍ଥଳେ ଦକ୍ଷିଣ ଭାରତରେ ଶୁକ୍ରବାର ଦିନ ହେଉଛି । ଗୋଟିଏ ପର୍ବକୁ ଦୁଇଦିନ ପାଳନ କରିବା ପଛରେ କ'ଣ କାରଣ ଅଛି, ସେକଥା ଧର୍ମଗୁରୁମାନେ ହିଁ ବୁଝନ୍ତି ।

ହେତୁବାଦୀ ମତରେ ମୁହୂର୍ତ୍ତଗଣନା ପଛରେ ରହିଛି ଏକ ସୁଚିନ୍ତିତ ବ୍ୟବସାୟ ବୁଦ୍ଧି । ଭକ୍ତମାନଙ୍କୁ ବୌଦ୍ଧିକ ପଙ୍ଗୁ କରି, ମାନସିକ ସ୍ତରରେ ଭ୍ରମିତ କରି, ଆର୍ଥିକ ଶୋଷଣ କରିବା ହେଉଛି ଅସଲ ଉଦ୍ଦେଶ୍ୟ । ଏହି ଯୁଗରେ ମୁହୂର୍ତ୍ତ ଗଣନା ଦ୍ୱାରା ବିଭିନ୍ନ ବ୍ୟବସାୟୀ ଓ ଗଣମାଧ୍ୟମକୁ ବି ପ୍ରଚୁର ପରିମାଣରେ ଫାଇଦା ହେଉଛି । ପର୍ବଦିନମାନଙ୍କରେ ଭୌତିକ ବସ୍ତୁଗୁଡିକର ଗଣମାଧ୍ୟମରେ ବିଜ୍ଞାପନ ଦ୍ୱାରା ଯଥେଷ୍ଟ ଫାଇଦା ହେଉଛି । ନିଜର ଜିନିଷ ବିକ୍ରି କରିବାପାଇଁ ବିଜ୍ଞାପନ ଦେବା ଭୁଲ୍ କଥା ନୁହେଁ କିମ୍ବା ସେଥିପାଇଁ କାହାରି ଆପତ୍ତି ରହିବା ଉଚିତ ନୁହେଁ, କିନ୍ତୁ ଏକ ଶୁଭ

ମୁହୂର୍ତ୍ତରେ ଅମୁକ ବସ୍ତୁ କିଣିଲେ ସୌଭାଗ୍ୟ ବୃଦ୍ଧି ହେବାର ଭ୍ରମ ବିଜ୍ଞାପନ ନିଶ୍ଚିତ ଭାବେ ଅନ୍ୟାୟ। ବ୍ୟବସାୟୀମାନେ ବି ଜାଣନ୍ତି ଯେ ମୁହୂର୍ତ୍ତର କୌଣସି ପ୍ରଭାବ ନାହିଁ । ଯେ କୌଣସି ମୁହୂର୍ତ୍ତରେ କିନିଷ ବିକ୍ରିହେଲେ ତାଙ୍କର ଲାଭ ନିଶ୍ଚିତ । କେବଳ ଅନ୍ଧ ବିଶ୍ୱାସୀ ଗ୍ରାହକ ଭାବନ୍ତି "ଧନତେରସ" ସମୟରେ ସୁନା ଓ ରୂପା କିଣିଲେ ଆମର ସୌଭାଗ୍ୟ ବୃଦ୍ଧିହେବ ।

ବିବାହ ଯୋଗ୍ୟ ଅନେକ ଯୁବକ, ଯୁବତୀ ତାଙ୍କର ଜାତକ ଗଣନାର ଭ୍ରାମକ ତଥ୍ୟ ଯୋଗୁଁ ଠିକ୍ ସମୟରେ ବିବାହ କରିପାରନ୍ତି ନାହିଁ । ଏଇଠି କେବଳ ଅଶିକ୍ଷିତ ନୁହେଁ ଶିକ୍ଷିତ ବର୍ଗ ବି ଧୋକା ଖାଇଯା'ନ୍ତି । ସେମାନେ ଗୋଟିଏ ସାଧାରଣ କଥା ବିଚାର କରିବା ଉଚିତ୍ ଯେ ଯେଉଁ ଧର୍ମର ଲୋକମାନେ ଜାତକ କ'ଣ ଜାଣନ୍ତି ନାହିଁ; ସେମାନଙ୍କ ଦାମ୍ପତ୍ୟ ଜୀବନ କ'ଣ ସୁଖରେ ଚଳୁନାହିଁ ? ଜାତକ ମେଳ କରି ଶୁଭ ମୁହୂର୍ତ୍ତରେ ବିବାହ କରିଥିବା ଦମ୍ପତିଙ୍କ କ'ଣ ବିଚ୍ଛେଦ ଘଟୁନାହିଁ ? ବିବାହ ବେଦୀରେ ଅହ୍ୟସୁଲକ୍ଷଣୀ ଆଶୀର୍ବାଦ ପାଇଥିବା କନ୍ୟା କ'ଣ ବୈଧବ୍ୟ ଯନ୍ତ୍ରଣା ଭୋଗ କରୁନାହିଁ ?

ଜୟନାରାୟଣ ତାଙ୍କର ଅଭିଯୋଗ ପତ୍ରରେ ଦୁଇଥର ଶୁଭ ମୁହୂର୍ତ୍ତ କାହିଁକି ରହୁଛି, ନ ଲେଖି ମୁହୂର୍ତ୍ତର ଆବଶ୍ୟକତା କାହିଁକି ବୋଲି ପ୍ରଶ୍ନ କରିବା ଉଚିତ୍ ଥିଲା । ସମସ୍ତେ ଏହା ସ୍ୱୀକାର କରିବେ ଯେ ବର୍ଷସାରା ପ୍ରତ୍ୟେକ ମୁହୂର୍ତ୍ତରେ ଦେଶର ବିଭିନ୍ନ ସ୍ଥାନରେ ପୂଜା ଆଦି ହେଉଛି । କିନ୍ତୁ ନିଜ ଅଞ୍ଚଳରେ ରହୁଥିବା ଧର୍ମଗୁରୁ, ପଣ୍ଡିତ ଓ ଜ୍ୟୋତିଷମାନେ ସେହି ଅଞ୍ଚଳର ଲୋକମାନଙ୍କୁ ତାଙ୍କ ଦ୍ୱାରା ଗଣନା କରାଯାଉଥିବା ଶୁଭ ମୁହୂର୍ତ୍ତକୁ ମାନିବାପାଇଁ ବାଧ୍ୟ କରିବା କେତେଦୂର ତର୍କ ସଂଗତ ? ଲୋକମାନେ ବୁଝିବା ଉଚିତ୍ ଯେ ଯେଉଁ ମୁହୂର୍ତ୍ତଟି ଅଶୁଭ ବୋଲି ଗୋଟିଏ ଧର୍ମର ବ୍ୟକ୍ତି ବିବାହ, ବ୍ରତ, ବିଦେଶ ଗମନ, ଗୃହ ପ୍ରବେଶ ଆଦି ବର୍ଜନ କରୁଛି, ଠିକ୍ ସେହି ମୁହୂର୍ତ୍ତରେ ଅନ୍ୟ ଏକ ଧର୍ମର ମଣିଷ ସବୁ କିଛି କରୁଛି ଏବଂ ସଫଳ ଜୀବନ ଯାପନ କରୁଛି ।

ଆଉ ଏକ ବୈଜ୍ଞାନିକ ତଥ୍ୟ ହେଉଛି - ସମୟର ମାପ, ଦିନ ଓ ମାସର ନାମ କରଣ, କୌଣସି ତଥାକଥିତ ଈଶ୍ୱର କରିନାହାଁନ୍ତି । ମଣିଷମାନେ ହିଁ କରିଛନ୍ତି । ଗୋଟିଏ ସୌର ବର୍ଷରେ ୩୬୫ ଦିନ ବା ୫୨ ସପ୍ତାହ ୧୨ମାସ, ସପ୍ତାହରେ ୭ଦିନ ଆଦି ଗଣନା ସରିବାପରେ ଯେଉଁଦିନ ସେହି ବିଦ୍ୱାନ ଗୋଷ୍ଠୀ ବସି ଠିକ୍ କଲେ ଯେ ଆଜିର ଦିନକୁ ନାମ ଦେବା ରବିବାର, ତା'ପର ଦିନ ସୋମବାର, ଏହି କ୍ରମରେ ଶନିବାର ଦିନ ୭ ଦିନ ସରିବ । ସେହିଦିନଠାରୁ ଦିନଗୁଡିକର ନାମକରଣ ହୋଇଗଲା । ଧୀରେଧୀରେ ଦୁନିଆର ସମସ୍ତ ଦେଶ ସ୍ୱୀକାର କଲେ । ଧରନ୍ତୁ ସେହି ବିଦ୍ୱାନ ଗୋଷ୍ଠୀ ଦ୍ୱିତୀୟ ଦିନଠାରୁ ରବିବାର ଆରମ୍ଭ କରିଥା'ନ୍ତେ, ତେବେ ଆଜିଆମେ ଯାହାକୁ ଗୁରୁବାର ବୋଲି ମାନୁଛୁ ତାହା ବୁଧବାର ହୋଇଥାନ୍ତା । ଯଦି ବାର ଗୁଡିକ ମନୁଷ୍ୟକୃତ ନ ହୋଇ ଦୈବୀକୃତ ହୋଇଥା'ନ୍ତା, ତେବେ ଖରା, ବର୍ଷା ଓ ଶୀତ ଋତୁ ଭଳି ଆମେ ଦିନଗୁଡିକର ବି ପ୍ରଭାବ ଅନୁଭବ କରିପାରନ୍ତେ । ଧରନ୍ତୁ, ରବିବାର ଦିନର ସୂର୍ଯ୍ୟ ଆଲୋକ ନାଲିଆ, ସୋମବାର ଦିନ ହଳଦିଆ, ମଙ୍ଗଳବାର ଦିନ ନେଳିଆ, ବୁଧବାର ଦିବ ବାଇଗଣୀ, ଗୁରୁବାର ଦିନ ଧଳା, ଶୁକ୍ରବାର ଦିନ ସବୁଜ ଓ ଶନିବାର ଦିନ ଧୂସର ହୋଇଥା'ନ୍ତା । ତେବେ ଆମକୁ ବାରଜାଣିବାପାଇଁ କ୍ୟାଲେଣ୍ଡର ଦେଖିବା ଦରକାର ପଡନ୍ତା ନାହିଁ । ସୂର୍ଯ୍ୟ କିରଣର ରଂଗ ଦେଖି ବାରର ନାମ ଜାଣିପାରନ୍ତେ । ଗୁରୁବାର ଦିନ ଲକ୍ଷ୍ମୀପୂଜା ନ କଲେ ଦରିଦ୍ର ହୁଅନ୍ତେ ଏବଂ ଶନିବାର ଦିନ ଶନି ଦେବତାଙ୍କୁ ପୂଜା ନ କଲେ ଆମର ସର୍ବନାଶ ହେବା ଉଚିତ୍ ହୁଅନ୍ତା । ପାଠକେ ବିଚାର କରନ୍ତୁ ।

*******

# ଧର୍ମନିରପେକ୍ଷତା : ଏକ ପର୍ଯ୍ୟାଲୋଚନା

ଭାରତ ଏକ ଧର୍ମନିରପେକ୍ଷ ଦେଶ। ସମ୍ବିଧାନରେ ଏହା [illegible] [illegible] [illegible], [illegible] ଧର୍ମନିରପେକ୍ଷତାର [illegible] ଯାହା ହେଉନା କାହିଁକି, ଦେଶର ଅନେକ [illegible] ଓ ପ୍ରଗତିଶୀଳ ବୁଦ୍ଧିଜୀବୀ ବ୍ୟକ୍ତିମାନଙ୍କ ମତରେ ଧର୍ମନିରପେକ୍ଷତାର ଅର୍ଥ ଅଲଗା ଅଲଗା ରହୁଛି। ଧର୍ମନିରପେକ୍ଷତାର ମୂଳ ଭାବ ଏବଂ ତାହାର ପରିଭାଷା ସହିତ ସମସ୍ତେ ଏକମତ ହୋଇପାରୁନାହାନ୍ତି। ଏଭଳି ପ୍ରଶ୍ନ ଉଠୁଛି -ସମସ୍ତ ଧର୍ମକୁ ସମସ୍ତେ ମିଶି ପାଳନ କରନ୍ତୁ ? କିମ୍ବା ସମସ୍ତ ଧର୍ମକୁ ସମସ୍ତେ ମିଶି ତ୍ୟାଗ ପୂର୍ବକ ବିରୋଧ କରନ୍ତୁ ଅଥବା ନିଜ ଧର୍ମକୁ ହିଁ ମାନନ୍ତୁ, ଅନ୍ୟ ଧର୍ମକୁ ବର୍ଜନ କରନ୍ତୁ ? ଏହା ଧର୍ମନିରପେକ୍ଷତାର ଅର୍ଥ ହୋଇପାରେ କି ?

ବିଶେଷଜ୍ଞଙ୍କ କେତେକଙ୍କ ତର୍କ ଦେଇ କହିଛନ୍ତି - "ଧର୍ମନିରପେକ୍ଷତା କେବଳ ଧାର୍ମିକତାକୁ ସମର୍ଥନ କରେନାହିଁ କିମ୍ବା ଅଧାର୍ମିକତାକୁ ସମର୍ଥନ କରେନାହିଁ। ବରଂ ଏହି ସିଦ୍ଧାନ୍ତ ଧାର୍ମିକତା ସହ ସଂପୂର୍ଣ୍ଣ ଭାବେ ସୁସଂଗତ ଭାବେ କାର୍ଯ୍ୟ କରେ। ରାଜ୍ୟ ଓ ସାମାଜିକ ଧର୍ମର ମହତ୍ତ୍ୱକୁ ସ୍ୱୀକାର କରେ ଏବଂ ଆବଶ୍ୟକତା ଅନୁସାରେ ସମସ୍ତ ଧର୍ମାବଲମ୍ବୀଙ୍କ ସମର୍ଥନରେ ହସ୍ତକ୍ଷେପ କରେ। ଏପରିକି ସମସ୍ତ ଧର୍ମର ଧର୍ମୀୟ କର୍ମକାଣ୍ଡ, ମେଳା ଓ ଯାତ୍ରା ଅନୁଷ୍ଠାନ ପାଇଁ ଆର୍ଥିକ ସହଯୋଗ ବି ଯୋଗାଇଥାଏ।

ହେତୁବାଦୀ ବ୍ୟକ୍ତିଙ୍କ ତର୍କ ହେଉଛି - "ଧର୍ମର ମୂଳ ଚରିତ୍ର ହେଉଛି - ଦମନ କରିବା ଓ ଶୋଷଣ କରିବା। ଯଦି ସମାଜରେ ସମାନତା ଆଣିବାକୁ ଚାହିଁବା ତେବେ ପ୍ରଥମେ ସମସ୍ତ ପ୍ରକାରର ଧାର୍ମିକ ଢାଞ୍ଚାକୁ ଭାଙ୍ଗିବାକୁ ପଡିବ।" ଡ. ଆମ୍ବେଦକର କହିଥିଲେ - "ଅସମାନତା ହିଁ ହିନ୍ଦୁଧର୍ମର ଆତ୍ମା।" ଏହି କାରଣରୁ ପ୍ରଜାତାନ୍ତ୍ରିକ ଓ ସମତାବାଦୀ ଭାରତ ନିର୍ମାଣରେ ସେ ଯେଉଁ ସ୍ୱପ୍ନ ଦେଖିଥିଲେ ସେଥିପାଇଁ ସେ ହିନ୍ଦୁଧର୍ମକୁ ତ୍ୟାଗ କରିବା ଆବଶ୍ୟକ ଥିଲା।

ଗତ ଲୋକସଭାରେ ବହୁମତ ପାଇ ଭାରତୀୟ ଜନତା ପାର୍ଟି ଦେଶର ଶାସନ କ୍ଷମତାକୁ ଆସିବା ପରେ, ଏହାର କିଛି ନେତା ଦେଶର ପ୍ରତ୍ୟେକ ସ୍କୁଲରେ ଭଗବତ ଗୀତାକୁ ପାଠ୍ୟକ୍ରମର ଅଙ୍ଗ କରିବାପାଇଁ ପ୍ରସ୍ତାବ ଦେଇଛନ୍ତି । ପରିଣାମ ସ୍ୱରୂପ ଏହି ସମ୍ପର୍କରେ ଏକ ବାଦାନୁବାଦର ସମ୍ଭାବନା ଦେଖାଯାଉଛି ।

ଗତ ୨୦୧୪ ଅଗଷ୍ଟ ୨ ତାରିଖରେ ଗୁଜୁରାଟ ବିଶ୍ୱବିଦ୍ୟାଳୟ କନଭେନସନ୍ ହଲରେ ଆୟୋଜିତ ଏକ କାର୍ଯ୍ୟକ୍ରମରେ ଭାଗ ନେଇଥିବା ଉଚ୍ଚତମ ନ୍ୟାୟାଳୟର ନ୍ୟାୟାଧୀଶ ନ୍ୟାୟ ମୂର୍ତ୍ତି ଶ୍ରୀ ଅନିଲ ଆର୍. ଦବେ ତାଙ୍କ ଭାଷଣରେ କହିଲେ - "ମୁଁ ଯଦି ଭାରତର ତାନାଶାହ (ଏକ ଛତ୍ରବାଦୀ) ହୋଇଥା'ନ୍ତି, ତେବେ ପ୍ରଥମ ଶ୍ରେଣୀରୁ ହିଁ ପିଲାମାନଙ୍କୁ ଗୀତା ଓ ମହାଭାରତ ପଢାଇବା ଆରମ୍ଭ କରିଦିଅନ୍ତି । ଏହା ହିଁ ଏକମାତ୍ର ଉପାୟ ଯାହା ଦ୍ୱାରା ମଣିଷ ଶିଖିପାରିବ, ଆମ୍ଭେ କିଭଳି ଜୀବନ ଜୀଇଁବା ଉଚିତ । ଯଦି କେହି କହିବ - ମୁଁ ଧର୍ମନିରପେକ୍ଷ କିମ୍ବା ଧର୍ମନିରପେକ୍ଷବାଦୀ ନୁହେଁ, ସେଥିପାଇଁ ମୁଁ କ୍ଷମା ମାଗୁଛି । କିନ୍ତୁ ପ୍ରତ୍ୟେକ ସ୍ଥାନରୁ ଭଲ ଜିନିଷ ଗ୍ରହଣ କରିବା ଉଚିତ ।"

ନ୍ୟାୟ ମୂର୍ତ୍ତି ଅନିଲ ଦବେଙ୍କ ଏହି ଭାଷଣକୁ ନେଇ ଦେଶର ବିଭିନ୍ନ ମହଲରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଛି । ଧର୍ମନିରପେକ୍ଷତାର ସମର୍ଥକମାନେ ବି ନ୍ୟାୟମୂର୍ତ୍ତିଙ୍କ ବିଚାରକୁ ବିରୋଧ କରିଛନ୍ତି । ସେମାନଙ୍କ ବିରୋଧ ବା ଚିନ୍ତା କିନ୍ତୁ ଅନ୍ୟ ପ୍ରକାର । କିଛି ବ୍ୟକ୍ତି କହିଲେ - ଶିକ୍ଷା ଅନୁଷ୍ଠାନରେ କୌଣସି ଏକ ଧର୍ମ ପୁସ୍ତକକୁ ସମାବେଶ କରିବା ଉଚିତ ହେବ କି ? ଅନ୍ୟ କିଛି ବ୍ୟକ୍ତି କହିଲେ - ଗୀତା ପଢାଇବା ଭାରତୀୟ ଧର୍ମନିରପେକ୍ଷତାର ବିରୋଧ ନୁହେଁ, କିନ୍ତୁ କେବଳ ଗୀତା ପଢାଇବା ଧର୍ମନିରପେକ୍ଷତାକୁ ବ୍ୟଙ୍ଗ କଲା ଭଳି ହେବ । ଅନ୍ୟ ଧର୍ମର ଗ୍ରନ୍ଥକୁ ପାଠ୍ୟକ୍ରମରେ ଯୋଗ କରା ନ ଯିବ କାହିଁକି ? ଅନ୍ୟ କିଛି ବ୍ୟକ୍ତି କହିଲେ - ଏହି ପ୍ରସ୍ତାବ ଏକ ଭୟାନକ ଚିନ୍ତାର ବିଷୟ ହୋଇପାରେ । ଏହାର କାରଣ ନୁହେଁ ଯେ ଗୀତା ଏକ ନିର୍ଦ୍ଦିଷ୍ଟ ଧର୍ମର ମାନ୍ୟତାପ୍ରାପ୍ତ ଗ୍ରନ୍ଥ । ଏହାର ଅନ୍ୟ କାରଣ ହେଉଛି -

ଧର୍ମ ପୁସ୍ତକ ଉପରେ ଆଲୋଚନାତ୍ମକ ଦୃଷ୍ଟିକୋଣ ରହିବ ନାହିଁ । ଶିକ୍ଷା ବ୍ୟବସ୍ଥାର କେନ୍ଦ୍ରୀୟ ତତ୍ତ୍ୱ ହେଉଛି - ପ୍ରତ୍ୟେକ ପାଠକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରିବା, ପରୀକ୍ଷା କରିବା, ତର୍କ ଓ ପ୍ରଶ୍ନ କରିବା ଏବଂ ଶେଷରେ ପରୀକ୍ଷିତ ଜ୍ଞାନକୁ ଆହରଣ କରିବା । ସମୟାନୁକ୍ରମେ ପାଠ୍ୟକ୍ରମରେ ତ୍ରୁଟି ଦେଖାଗଲେ ବିଷୟକୁ ପରିମାର୍ଜିତ କରି ପରିବର୍ତ୍ତନ କରାଯାଇଥାଏ । କିନ୍ତୁ ଧାର୍ମିକ ପୁସ୍ତକରେ ତାହା ଆଦୌ ସମ୍ଭବ ନୁହେଁ । ଯାହା ଲେଖାଅଛି ତାହାକୁ ହିଁ ସତ୍ୟ ବୋଲି ମାନିବାକୁ ବାଧ୍ୟ କରାଯାଏ ।

ନ୍ୟାୟ ମୂର୍ତ୍ତି ଅନିଲ ଦବେ ଗୀତାରୁ ଭଲକଥା ଗୁଡିକ ଶିଖିବାପାଇଁ କହୁଛନ୍ତି, କିନ୍ତୁ ସେଥିରେ ଥିବା କିଛି ବିବାଦୀୟ ଓ ଅସଂଗତ ପ୍ରସଙ୍ଗକୁ ଗୀତା ଶିକ୍ଷାରୁ ବାଦ ଦିଆଯାଇପାରିବ କି ? ଗୀତାରେ ଜାତି, ବର୍ଣ୍ଣ ଏବଂ ଲିଙ୍ଗ ଆଧାରରେ ଉଚ୍ଚ ଓ ନୀଚ ଭେଦଭାବ ପୂର୍ଣ୍ଣ ବ୍ୟବସ୍ଥା ରହୁଛି । ଭାରତୀୟ ପରମ୍ପରାରେ ସେହି ଜାତିଗତ ଏବଂ ଲୈଙ୍ଗିକ ଭେଦଭାବକୁ କେବଳ ମହିମା ମଣ୍ଡନ କରାଯାଇନାହିଁ ବରଂ ତାହା ଭାରତୀୟ ସଂସ୍କୃତିର ଅଭିନ୍ନ ଅଙ୍ଗ ଭଳି ମାନି ଦିଆଯାଇଛି । ପ୍ରଶ୍ନ ଉଠୁଛି- ଯଦି ଭଗବତ ଗୀତାକୁ ପାଠ୍ୟକ୍ରମରେ ଯୋଗ କରାଯିବ, ତେବେ ତା'ଉପରେ ତର୍କ କରିବା କିମ୍ବା ଆଲୋଚନାତ୍ମକ ଅଧ୍ୟୟନ କରିବା ଅଧିକାର ବିଦ୍ୟାର୍ଥୀ କିମ୍ବା ଶିକ୍ଷକମାନଙ୍କୁ ଦିଆଯାଇପାରିବ କି ? ଯେଉଁ ଦେଶରେ ଧାର୍ମିକ ବିଷୟକୁ ତର୍କର ଉର୍ଦ୍ଧ୍ୱରେ ରଖାଯାଉଛି । କାରଣ ଧର୍ମବ୍ୟକ୍ତିର ଆସ୍ଥା ବା ବିଶ୍ୱାସ ସହିତ ଜଡିତ । ସେହି ଧାର୍ମିକ ପୁସ୍ତକର ଆଲୋଚନା କରିବା ସହ୍ୟ କରାଯାଇପାରିବ କି ? କଦାପି ନୁହେଁ ।

ପ୍ରଥମେ ଆମକୁ ଜାଣିବା ଆବଶ୍ୟକ ଯେ ଗୀତାକୁ ପାଠ୍ୟକ୍ରମରେ ଯୋଗ କରିବା ପୂର୍ବରୁ ଏହାର ଆଲୋଚନାତ୍ମକ ଅଧ୍ୟୟନକୁ ସ୍ୱୀକାର୍ଯ୍ୟ କରିବା ଆବଶ୍ୟକ କାହିଁକି ?

ଏହା ସର୍ବ ବିଦିତ ସତ୍ୟ ଯେ ଗୀତା ହିନ୍ଦୁ ଜନମାନସରେ ଅତ୍ୟନ୍ତ ସମ୍ମାନ ଓ ପବିତ୍ର ଗ୍ରନ୍ଥ ଅଟେ । ଗୀତା ଦ୍ୱାରା ଅନେକ ମହାମନିଷି ଯଥାଃ ମହାତ୍ମାଗାନ୍ଧୀ, ବାଲ ଗଂଗାଧର ତିଲକ ଏବଂ ଅରବିନ୍ଦ ଘୋଷ ଆଦି ପ୍ରଭାବିତ ହୋଇଥିଲେ । ଏହାର ବିପରୀତ ଭାରତୀୟ ସମ୍ବିଧାନର ପ୍ରଣେତା ଡକ୍ଟର ଆମ୍ବେଦକର ଗୀତାକୁ କଟୁ

ସମାଲୋଚନା କରିଥିଲେ । ତାଙ୍କର ଅପ୍ରକାଶିତ ପୁସ୍ତକ "Revolution and Counter Revolution in ancient India"ରେ ଡକ୍ଟର ଆମ୍ବେଦକରଙ୍କ ବିଚାର ସ୍ପଷ୍ଟ ଭାବେ ଉଲ୍ଲେଖ ଅଛି । ତାଙ୍କ ମତରେ "ଭଗବତ ଗୀତା ଏକ ଧାର୍ମିକ ପୁସ୍ତକ ନୁହେଁ କିମ୍ବା ଦର୍ଶନ ଶାସ୍ତ୍ର ବି ନୁହେଁ ।' ଗୀତା କେବଳ କିଛି ଧାର୍ମିକ ରୀତିବାଦକୁ ଦାର୍ଶନିକ ଆଧାରରେ ଉଚିତ ବୋଲି ପ୍ରମାଣିତ କରୁଛି । ଏହା ପ୍ରତି କ୍ରାନ୍ତିର ଦର୍ଶନ ଶାସ୍ତ୍ରୀୟ ସମର୍ଥନ ମାତ୍ର । ତାଙ୍କ ମତରେ - ବୌଦ୍ଧ ଧର୍ମ ଦ୍ୱାରା ଭାରତରେ ପ୍ରଚାର କରାଯାଇଥିବା ନୈତିକ, ସାମାଜିକ ଏବଂ ରାଜନୈତିକ କ୍ରାନ୍ତିର ପ୍ରତିକ୍ରିୟା ସହିତ ବ୍ରାହ୍ମଣବର୍ଗ, ବ୍ରାହ୍ମଣବାଦ ପୁନଃ ସ୍ଥାପନାପାଇଁ ଯେଉଁ ଅଭିଯାନ ନବ ବ୍ରାହ୍ମଣବାଦ ନାମରେ ପ୍ରଚଳନ ତାହା ହିଁ ପ୍ରତିକ୍ରାନ୍ତି ଥିଲା । ସେ ଲେଖିଛନ୍ତି ପ୍ରତିକ୍ରାନ୍ତିକୁ ଦାର୍ଶନିକ ଆଧାରରେ ଉଚିତ ପ୍ରମାଣିତ କରିବାପାଇଁ ଗୀତାର ୨ୟ ଅଧ୍ୟାୟରେ ଶ୍ଳୋକ ୨ ରୁ ୨୮ ପର୍ଯ୍ୟନ୍ତ ଉଲ୍ଲେଖ ଥିବା ଉପଦେଶ ସ୍ପଷ୍ଟ ରୂପେ ଦେଖିବାକୁ ମିଳୁଛି । ଗୀତାର ତର୍କ ଅନୁସାରେ - ଏହି ଦୁନିଆ ବିନାଶଶୀଳ ଏବଂ ମନୁଷ୍ୟ ନଶ୍ୱର ଅଟେ । ପ୍ରତ୍ୟେକ ମଣିଷକୁ ଦିନେ ନା' ଦିନେ ମରିବାକୁ ହେବ । ତେଣୁ ମଣିଷ ସ୍ୱାଭାବିକ ମୃତ୍ୟୁବରଣ କରୁଛି କିମ୍ବା ହିଂସା ଦ୍ୱାରା କରୁଛି, ସେଥିପାଇଁ ଜ୍ଞାନୀ ବ୍ୟକ୍ତି ଚିନ୍ତା କରିବା ଅନୁଚିତ । ଜୀବନ ମିଥ୍ୟା ତେଣୁ ମୃତ୍ୟୁପାଇଁ ଦୁଃଖ କରିବା କିମ୍ବା ଅଶ୍ରୁ ବିସର୍ଜନ କରିବା ନିରର୍ଥକ । ଅନ୍ୟ ଏକ ରୀତିବାଦର ସମର୍ଥନରେ ଗୀତା ଦର୍ଶନ ଶାସ୍ତ୍ରୀୟ ତର୍କ ହେଉଛି- ଚର୍ତୁବର୍ଣ୍ଣ ସମ୍ବନ୍ଧ ମନୁଷ୍ୟର ଜନ୍ମଜାତ ଓ ପ୍ରକୃତିଦତ୍ତ ଗୁଣ ସହିତ ରହୁଛି । ଅନ୍ୟ ଏକ ତର୍କ ହେଉଛି କର୍ମମାର୍ଗ । କର୍ମମାର୍ଗର ଅର୍ଥ ମୁକ୍ତି ପାଇଁ ଯଜ୍ଞ ଆଦି କର୍ମକାଣ୍ଡ କରିବା ଉଚିତ ।

ଡକ୍ଟର ଆମ୍ବେଦକରଙ୍କ ବିଚାରକୁ କେହି କେହି ଭୁଲ ବା କେହି ଠିକ୍ ବୋଲି କହିପାରନ୍ତି । କିନ୍ତୁ ଏହା ନିଶ୍ଚିତ ଯେ ଶ୍ରେଣୀଗୃହରେ ଏହାକୁ ଆଦୌ ଚର୍ଚ୍ଚା କରାଯିବ ନାହିଁ । ହୁଏତ ଏହି ବିଚାରକୁ ସମର୍ଥନ କରୁଥିବା ଛାତ୍ର ଓ ଶିକ୍ଷକମାନଙ୍କୁ ଖଳନାୟକ ରୂପେ ଗ୍ରହଣ କରାଯିବ । ଏହାଦ୍ୱାରା ଭାରତର ପ୍ରଜାତାନ୍ତ୍ରିକ ଏବଂ ଧର୍ମନିରପେକ୍ଷ ନୀତି ଘୋର ସଂକଟରେ ସମ୍ମୁଖୀନ ହେବ । କେବଳ ଗୀତା ପଢାଇବା ଦ୍ୱାରା ଜ୍ଞାନର

ବିକାଶ ହେବ ତାହା ବି ନୁହେଁ । କାରଣ ଭାରତୀୟ ସମାଜରେ ବହୁତ ପୂର୍ବରୁ ଜ୍ଞାନ, ବିଜ୍ଞାନ ଓ ଇତିହାସ ସଂପର୍କରେ ପ୍ରଭୁତ୍ୱଶାଳୀ ବର୍ଗଙ୍କ ସଂସ୍କରଣ ପ୍ରଭାବ ବିସ୍ତାର କରିସାରିଛି । ଆଧୁନିକ ଯୁଗରେ ଗୀତା ଜ୍ଞାନ ବିଦ୍ୟାର୍ଥୀମାନଙ୍କୁ ଦ୍ୱନ୍ଦ୍ୱରେ ପକାଇବ । ସେମାନଙ୍କର ନିଜର ଏବଂ ଅନ୍ୟ ଧର୍ମ ପ୍ରତି ଥିବା ଅବଧାରଣା ବ୍ୟାହତ ହେବ। ପାଠ୍ୟକ୍ରମରେ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଗୀତାର ପ୍ରଶଂସା ସ୍ଥାନପାଇବ। କିନ୍ତୁ ଆମ୍ବେଦକରଙ୍କ ଦ୍ୱାରା ସମାଲୋଚନାକୁ ସ୍ଥାନ ମିଳିବ ନାହିଁ । ଏହାର ଦୁଇଟି ସମ୍ଭାବିତ କାରଣ ରହିଛି । ପ୍ରଥମତଃ ଆମ୍ବେଦକରଙ୍କ ତୁଳନାରେ ମହାତ୍ମାଗାନ୍ଧୀଙ୍କୁ ସମାଜରେ ବହୁତ ଅଧିକ ମହତ୍ତ୍ୱ ଦିଯାଇଛି । ଦ୍ୱିତୀୟରେ ଆମ୍ବେଦକରଙ୍କ ସମାଲୋଚନାକୁ ପାଠ୍ୟକ୍ରମରେ ଯୋଗ କଲେ ଗୀତା ଭଳି ଏକ ସର୍ବକାଳୀନ, ତ୍ରୁଟିରହିତ ଓ ଅଥାହ ଜ୍ଞାନର ଭଣ୍ଡାର ବୋଲି ଥିବା ମାନ୍ୟତାର ଅବମାନନା ହେବ ।

ଗୀତାକୁ ପାଠ୍ୟକ୍ରମରେ ଯୋଗକଲେ ସମାଜରେ ସମାନତା, ପ୍ରଜାତନ୍ତ୍ର ଏବଂ ଧର୍ମ ନିରପେକ୍ଷତାକୁ ଆଘାତ ଲାଗିବାର ସମ୍ଭାବନା ରହିଛି । କାରଣ ଅନ୍ୟ ଧର୍ମାବଲମ୍ବୀମାନେ ଏହାକୁ ଗ୍ରହଣ କରିବେ ନାହିଁ ବରଂ ବିରୋଧ ପ୍ରକଟ କରିବାର ସମ୍ଭାବନା ରହିବ ଯେକୌଣସି ଧର୍ମଗ୍ରନ୍ଥକୁ ସାର୍ବଜନିକ ଭାବେ ପାଠ୍ୟକ୍ରମରେ ଯୋଗ କଲେ ସର୍ବସମ୍ମତି ଲାଭ କରିବା ଆଦୌ ସମ୍ଭବ ନୁହେଁ ।

*******

# ଆମର ବି ଥିଲା କହିବା ଏକ ଆସ୍ଫାଳନ

ଅନେକ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳିଥାଏ "ଆମର ବି ଥିଲା ।" ଏହା କହିବା ପଛରେ ରହୁଥିବାର କାରଣ ସମ୍ପର୍କରେ ବିଚାର କଲେ ଦୁଇଟି କଥା ମନକୁ ଆସେ । ପ୍ରଥମ ନିଜର ପ୍ରଥମ ପର୍ଯ୍ୟାୟର ଜୀବନ ସମୟରେ ଯେଉଁ ସୁଖ ସମ୍ପଦ ଥିଲା, ଆଜି ତାହା ନାହିଁ । ତେଣୁ ମନକୁ ସାନ୍ତ୍ୱନା ଦେବାପାଇଁ ଏଭଳି କୁହାଯାଉଥିବା କଥାଟି ସହଜରେ ବୁଝା ପଡୁଛି । ଦ୍ୱିତୀୟ ଅନ୍ୟମାନଙ୍କ ଆଗରେ ନିଜକୁ ଶ୍ରେଷ୍ଠ ପ୍ରମାଣିତ କରିବାପାଇଁ ବିଗତ ଯୁଗମାନଙ୍କରେ କାଳ୍ପନିକ ସୁଖ ସମ୍ପଦର ବର୍ଣ୍ଣନା କରିବା ଏକ ଆସ୍ଫାଳନ ବୋଲି କହିବାରେ କୌଣସି ଦ୍ୱିଧା ରହିବା ଉଚିତ୍ ନୁହେଁ । କାରଣ ସେ ଗୁଡିକର କୌଣସି ପ୍ରମାଣିକ ତଥ୍ୟ ଉପଲବ୍ଧ ନାହିଁ ଏବଂ ସେଗୁଡିକ ବିଶ୍ୱାସ ଯୋଗ୍ୟ ବି ନୁହେଁ । ଧର୍ମଶାସ୍ତ୍ରମାନଙ୍କରେ ବର୍ଣ୍ଣନା କରାଯାଇଥିବା ଅଧିକାଂଶ କାହାଣୀ, ଦୂରତା ଓ ସମୟର ମାପ, ଆଦି ଅତିରଞ୍ଜିତ ଭଳି ଲାଗେ । ମହାଭାରତ ଓ ରାମାୟଣ ଭଳି ମହାକାବ୍ୟରେ ମଣିଷ, ଦାନବ, ହାତୀ, ଘୋଡା, ଗାଇ, ବାନର ଅସୁରମାନଙ୍କ ସଂଖ୍ୟା ଯେତିକି ଲେଖାଯାଇଛି । ସେତିକି ସଂଖ୍ୟାରେ ଜୀବଜନ୍ତୁ ସାରାପୃଥିବୀରେ ଆଜି ବି ଥିବେ କି ନାହିଁ ସନ୍ଦେହ । ମହାଭାରତ ଯୁଦ୍ଧରେ ମଣିଷ, ହାତୀ ଓ ଘୋଡା ଏତେ ପରିମାଣରେ କଟା ଯାଇଥିଲା ଯେ ରକ୍ତର ନଦୀଟିଏ ସୃଷ୍ଟି ହୋଇଥିଲା । ସେତେବେଳେ କ'ଣ ରକ୍ତ ଶରୀର ବାହାରକୁ ଆସିଲେ ଜମାଟ ବାନ୍ଧୁ ନଥିଲା ? ସେତେବେଳେ ମୁନି, ଋଷି ଏପରିକି ଗନ୍ଧର୍ବ ଓ ଅସୁରମାନେ ହଜାର ହଜାର ବର୍ଷ ଧରି ଜୀବିତ ରହୁଥିଲେ । କାରଣ ସେମାନେ ତପସ୍ୟା କରି ଦେବତାମାନଙ୍କ ପାଖରୁ ବର ପାଇଯାଉଥିଲେ । ସେମାନଙ୍କୁ ହତ୍ୟା କରିବାପାଇଁ ଦେବତାମାନେ ନାନା ପ୍ରକାର ଉପାୟ ଅବଲମ୍ବନ କରୁଥିଲେ । ସେହି ଯୁଗରେ ସାଧାରଣ ମଣିଷ ପ୍ରାକୃତିକ ଭାବେ ଜନ୍ମଗ୍ରହଣ କରୁଥିଲେ କିନ୍ତୁ କିଛି ବିଶିଷ୍ଟ ଚରିତ୍ର ଅପ୍ରାକୃତିକ ଭାବେ ଜନ୍ମ ହୋଇଥିବା କଥା ଲେଖାଯାଇଛି । ଯଥା କାନରୁ ଜନ୍ମ, ପତ୍ରଦାନାରେ ଜନ୍ମ, ପଶୁ, ପକ୍ଷୀଙ୍କ ଗର୍ଭରୁ ଜନ୍ମ । ଏହିଭଳି ଅବୈଜ୍ଞାନିକ, ଅସଙ୍ଗତ ଓ ଅବିଶ୍ୱାସନୀୟ କାହାଣୀରେ ଭରି ରହିଥିବା ଗ୍ରନ୍ଥଗୁଡିକ ଆଜି ପର୍ଯ୍ୟନ୍ତ ବହୁ ମାନ୍ୟ, ପୂଜ୍ୟ, ଧର୍ମଗ୍ରନ୍ଥ ରୂପେ ପ୍ରତିଷ୍ଠିତ ।

ମଜା କଥା ହେଉଛି - ଶୀତତାପ କୋଠରୀରେ ବାସ କରୁଥିବା, ମହଙ୍ଗା ଗାଡିରେ ଯାତ୍ରା କରୁଥିବା, ମୋବାଇଲ୍, ଟିଭି, ଇଣ୍ଟରନେଟ୍, ଲ୍ୟାପଟପ୍ ଭଳି ବିଜ୍ଞାନ ନିର୍ମିତ ସମସ୍ତ ଭୌତିକ ବସ୍ତୁ ବ୍ୟବହାର କରୁଥିବା ତଥାକଥିତ ଶାସ୍ତ୍ର ବିଶାରଦ, ମହାଜ୍ଞାନୀ, ସିଦ୍ଧପୁରୁଷମାନେ ମାଇକ୍ରୋଫୋନ୍ ଆଗରେବସି ପ୍ରବଚନ ଦେବା

ସମୟରେ ବଡ ଗର୍ବର ସହିତ କହନ୍ତି - "ଆପଣମାନେ ଜାଣିଛନ୍ତି କି ? ଆମର ଅମୁକ ଶାସ୍ତ୍ରରେ ଉଡାଯାହାଜ ତିଆରି କରିବାର ସମସ୍ତ ଟେକ୍‌ନିକାଲ୍ ଜ୍ଞାନ ଲେଖାଅଛି । ଅମୁକ ଶାସ୍ତ୍ରରେ ରେଳଇଞ୍ଜିନ ତିଆରି ତଥ୍ୟ ଅଛି । ଅମୁକ ଗ୍ରନ୍ଥରେ ଅସ୍ତ୍ର, ଶସ୍ତ୍ର ତିଆରି କଥା ଲେଖାଅଛି । ଆଧୁନିକ ବିଜ୍ଞାନ ଆଜି ଯାହାସବୁ ତିଆରି କରୁଛି, ସେ ସବୁର ଜ୍ଞାନ ଆମର ଶାସ୍ତ୍ରମାନଙ୍କରେ ଆଗରୁ ଲେଖାଅଛି । ମୂଳ ଧର୍ମଗ୍ରନ୍ଥ ପଢ଼ି ନଥିବା ଏବଂ ଶୁଣା କଥାକୁ ବିଶ୍ୱାସ କରୁଥିବା ସାଧାରଣ ଜନତା ଧର୍ମଗୁରୁଙ୍କ ପ୍ରବଚନ ଶୁଣି କରତାଳି ମାରି ସମର୍ଥନ ଜଣେଇଥା'ନ୍ତି ।

ଏଇଠି ପ୍ରଶ୍ନ ଉଠୁଛି - ଯଦି ପୃଥିବୀର ସମସ୍ତ ମାନବ ଜାତିରୁ ହିନ୍ଦୁ ମାନବ ସବୁଠାରୁ ପୁରୁଣା ଏବଂ ତାଙ୍କର ଧର୍ମଶାସ୍ତ୍ର ସବୁଠାରୁ ପୁରୁଣା, ଯେଉଁଥିରେ ସମସ୍ତ ପ୍ରକାର ଜ୍ଞାନକୌଶଳ ଲେଖାଯାଇଥିଲା, ତେବେ ସର୍ବପ୍ରଥମେ ଭାରତରେ ହିଁ ବିଜ୍ଞାନର ବିକାଶ ହେଲା ନାହିଁ କାହିଁକି ? ଭାରତରେ ହିଁ, ଯାନବାହାନ, ଉଡାଯାହାଜ, ଟିଭି, ରେଡିଓ, ବିଜୁଳୀ ଆଦି ପ୍ରଥମେ ତିଆରି ହେଲା ନାହିଁ କାହିଁକି ? ଧର୍ମଶାସ୍ତ୍ରଗୁଡିକର ଲେଖକ, ଧର୍ମଶାସ୍ତ୍ରକୁ ପଢି ବୁଝିପାରିବା ଭଳି ଜ୍ଞାନୀ ପୁରୁଷ, ଜ୍ଞାନ କୌଶଳ ଦ୍ୱାରା କର୍ମ କରିବା ପାଇଁ କର୍ମଠ ବ୍ୟକ୍ତି ଓ ସମସ୍ତ ପ୍ରକାର ପ୍ରାକୃତିକ ସାଧନ ବି ଥିଲା । ତେବେ ଉତ୍ପାଦନପାଇଁ ଅସୁବିଧା କ'ଣ ଥିଲା ? ଏହି ପ୍ରଶ୍ନର ସିଧା ଉତ୍ତର କେହି ବି ଦିଅନ୍ତି ନାହିଁ ।

ହେତୁବାଦୀମାନେ ଯଦି କୁହନ୍ତି - ସେମିତି କିଛି ଟେକ୍‌ନିକାଲ ଥିଓରୀ କୌଣସି ଗ୍ରନ୍ଥରେ ନାହିଁ, ଏହା କେବଳ ଭାରତୀୟ ସଂସ୍କୃତିକୁ ଗୌରବାନ୍ୱିତ କରିବାପାଇଁ ଅତିରଞ୍ଜିତ କରି ପ୍ରଚାର କରାଯାଉଛି । ଏହାର କଡା ପ୍ରତିବାଦ କରି ଧର୍ମଗୁରୁମାନେ କୁହନ୍ତି - ଅଛି । ନିଶ୍ଚୟ ଅଛି । ତୁମେ ପଢି ନାହଁ କିମ୍ବା ପଢିଲେ ବି ଠିକ୍ ଭାବେ ବୁଝି ନାହଁ । ତେଣୁ ଏଭଳି ବାଜେ କଥା କହୁଛ ।

ହେତୁବାଦୀମାନେ ବିନମ୍ର ପ୍ରଦର୍ଶନ ପୂର୍ବକ କୁହନ୍ତି-କ୍ଷମା କରିବେ ମହାଶୟ। ଆମେ ସିନା ପଢି ବୁଝି ପାରିନାହୁଁ । ଆପଣ ମାନେ ତ ପାରୁଛନ୍ତି । ସେହିସବୁ ଗ୍ରନ୍ଥ ଏବେ ବି ଅଛି । ସେହିସବୁ ଜ୍ଞାନକୌଶଳ ପ୍ରୟୋଗ କରି ଆମ ଦେଶରେ ଗବେଷଣାଗାର ତିଆରି କରନ୍ତୁ । ଦେଶୀ ଉଡାଯାହାଜ, ଦେଶୀ କାର, ଦେଶୀ ରକେଟ, ଦେଶୀ ମାରଣାସ୍ତ୍ର ତିଆରି କରନ୍ତୁ । ବୈଦିକ ଟେକ୍‌ନୋଲୋଜି ଦ୍ୱାରା ତିଆରି ମହାଶକ୍ତିଶାଳୀ ବ୍ରହ୍ମାସ୍ତ୍ର, ପଶୁପତ ଅସ୍ତ୍ର, ଆଗ୍ନେୟାସ୍ତ୍ର ତିଆରି ହେଲେ ସାରା ଦୁନିଆ ଭାରତକୁ ସଲାମ କରିବ । ଅସୁବିଧା ରହିଛି କେଉଁଠି ?

*******

ହେତୁବାଦୀ ବାଲ୍ମୀକି ନାୟକ ଜଣେ ଅବସରପ୍ରାପ୍ତ ବାୟୁସୈନିକ । ସେ ଗଞ୍ଜାମ ଜିଲ୍ଲାର ପାଟରା ପଲ୍ଲୀ ଗ୍ରାମରେ ୧୯୫୧ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ପିଲା ଦିନେ ଧର୍ମଭୀରୁ ଥିବା ଯୁବକ ଆଜି ଜଣେ ନିର୍ଭିକ ହେତୁବାଦୀ ମଣିଷ। ତାଙ୍କର ତର୍କଶୀଳ ମନ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣ ତାଙ୍କୁ ଏକ ସଫଳ ମାନବବାଦୀ ମଣିଷରେ ପରିଣତ କରିଛି । ତାଙ୍କର ହେତୁବାଦୀ ବିଚାରଧାରା ଉପରେ ଆଧାରିତ ୨୫୦ରୁ ଅଧିକ ପ୍ରବଂଧ ଓ ଗଳ୍ପ ପ୍ରାୟ ୬୦ରୁ ଅଧିକ ପତ୍ର ପ୍ରତିକାରେ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଛି । ତାଙ୍କର ମୋଟ ୬ ଗୋଟି ପ୍ରବଂଧ ସଂକଳନ "ମୁକ୍ତ ମନର ବିଚାର, ଚମତ୍କାରର ରହସ୍ୟ, ତର୍କର ଉର୍ଦ୍ଧରେ କିଏ ?, ହେତୁବାଦର ଆବଶ୍ୟକତା, ଅଦ୍ଭୁତ ଜନ ବିଶ୍ୱାସ ଓ ଦେବତୁବାଦୀ ରହସ୍ୟ" ପ୍ରକାଶ ପାଇ ବିପୁଳ ଜନ ସମର୍ଥନ ପ୍ରାପ୍ତ କରିଛି । "ଚମତ୍କାରର ରହସ୍ୟ" ଓ "ତର୍କର ଉର୍ଦ୍ଧରେ କିଏ" ପୁସ୍ତକ ଦୁଇଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବା ପରେ ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବା ପାଇଁ ତାଙ୍କର ସୁଧି ପାଠକମାନଙ୍କ ଆଗ୍ରହ ଆମକୁ ପ୍ରେରିତ କରିଛି । ଏହି ପୁସ୍ତକରେ ପ୍ରକାଶିତ ତର୍କ ସଂଗତ ଲେଖା ଗୁଡିକ ପାଠକମାନଙ୍କୁ ମୁକ୍ତ ଚିନ୍ତନ ପାଇଁ ପ୍ରେରିତ କରିବ ବୋଲି ଆମର ଦୃଢ ବିଶ୍ୱାସ ।

*ମମତା ନାୟକ*

ପ୍ରକାଶିକା